


## ...ରେ ଖୁସିମଜାର ସେହି ଅପୂର୍ବ ମୁହୂର୍ତ୍ତଟି ଯେତେବେଳେ ...ମାର ମନପ୍ରାଣକୁ ଆନନ୍ଦରେ ଉଚ୍ଛୁଳ କରିଦେଇଛି ...ବେଳେ ମୁହଁରେ ବ୍ରଣ ଦେଖାଦେଇ ସବୁକିଛି ନଷ୍ଟ କରିଦେଲା...

ପ ପ୍ରସ୍ତୁତ କରିନେଇଥିଲି
ରଣୀୟ ଦିନଟି ପାଇଁ—
ଅନୁଷ୍ଠାନ । ଟ୍ୟାଲେଣ୍ଟ
ପାଇଁ ମୋତେ ମନୋନୀତ
ଖୁବ ଭଲ ରିହର୍ସଲ ବି
ଉଥିଲା ସବୁ କିଛି ଭଲରେ
ଠିକ ଯେତିକିବେଳେ .....
ମୁହଁରେ କିଛି ବ୍ରଣ
..ଏହା ହୋଇପାରେନା.....
'ଣ ଏହା ହେବାର ଥିଲା.....
ଜୀବନର ଖୁସିମଜାର
ଗେଇ ଆସୁଛି ! ଏହି ମୁହଁ
ରେ ଠିଆ ହେବି କିପରି.....

ମୋର ଜଣେ ବାଂଧବୀ
ଏତେ ବ୍ୟସ୍ତ ହୋଇ ପଡୁଛୁ
ଲ ବ୍ୟବହାର କର । ମୁଁ ବି
ତୁ ତ ଜାଣୁ କ୍ଲିଅରେସିଲ

ବ୍ରଣସବୁ ସଫା କରିଦିଏ, ଆଉ ବଢିବାକୁ ବି ଦିଏ ନାହିଁ । ମୁଁ ତାହାହିଁ କଲି, ଆଉ ବିଶ୍ୱାସ କରନ୍ତୁ ଭାରୀ ଚମତକାର ଫଳ ମିଳିଲା ।

ଘନ ଘନ କରତାଳି ମଧ୍ୟରେ ମୁଁ ପୁରସ୍କାର ଗ୍ରହଣ କଲି । ନୀରବରେ ଧନ୍ୟବାଦ ଦେଲି କ୍ଲିଅରେସିଲକୁ । ସତରେ କ୍ଲିଅରେସିଲ ମୋର ଖୁବ ଉପକାର କରିଛି—ମୋତେ ଦେଇଛି ମୋ ଜୀବନରେ ଖୁସିମଜାର ସେହି ଅପୂର୍ବ ମୁହୂର୍ତ୍ତଟି !

**କ୍ଲିଅରେସିଲ ୩ ପ୍ରକାରେ କାର୍ଯ୍ୟ କରେ**



**୧. ବ୍ରଣସବୁ ଖୋଲିଦିଏ**
[illegible] ସାହାଯ୍ୟ କରେ ।



**୨. ଜୀବାଣୁ'ର ପ୍ରତିରୋଧ କରେ**
ଜୀବାଣୁ ବିରୁଦ୍ଧ କ୍ରିୟା, [illegible] ଜୀବାଣୁ'ର ପ୍ରତିରୋଧ କରେ ।



**୩. ବ୍ରଣସବୁ ଶୁଖାଇ ଦିଏ**
[illegible] ସାହାଯ୍ୟ କରେ ।




**...ଅରେସିଲ** ବ୍ରଣ ବିଶେଷଜ୍ଞଙ୍କ ଇଚ୍ଛେ, ପ୍ରକୃତରେ କାମ ଦିଏ

OBM-7991 ORI



# ସେ ମଧ୍ୟ ନିଜର ଯତ୍ନ ଦରକାର କରନ୍ତି

ଜଳଖିଆ ତିଆରି କରିବା, ସ୍କୁଲ ପାଇଁ ନିଜ ପିଲାମାନଙ୍କୁ ପ୍ରସ୍ତୁତ କରେଇବା, ମଧ୍ୟାହ୍ନ ଭୋଜନ ପ୍ରସ୍ତୁତ କରିବା, ବଜାର ସଉଦା କରିବା, ଘର ଓ ନିଜ ପରିବାରର ଯତ୍ନ ନେବା···ଏମିତି ଦେଖିବାକୁ ଗଲେ ମୋ ପାଇଁ ଦିନସାରା ଜଞ୍ଜାଳ ଲାଗିରହିଛି । ତେଣୁ ମୁଁ, ହର୍ଲିକସ୍ ଦରକାର କରେ ।

ହର୍ଲିକ୍ସରେ ପୋଷଣକାରୀ ଗୁଣ ଭରି ରହିଥିବାରୁ, ତାହା, ସାରାଦିନ ପାଇଁ ମୋତେ ଶକ୍ତି ଓ ସ୍ଫୁର୍ତ୍ତି ଯୋଗେଇଥାଏ, ଆଉ ନିଜ ପରିବାର ସହିତ ମୂଲ୍ୟବାନ ସଂଧ୍ୟା ସମୟକୁ ଉପଭୋଗ କରିବାକୁ ମୁଁ, ତଥାପି ସତେଜ ରୁହେ ।



ଜଣେ ଗୃହିଣୀଙ୍କର ଶକ୍ତିଭରା କପ୍

ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ । ଏଥିରେ କ୍ରୀମଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ ସୁନେଲି ଗହମର ସମସ୍ତ ପୋଷଣକାରି ଗୁଣ ଭରି ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର ୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।




ପୁଷ୍ଟି ଯୋଗାଇବାରେ ଅତୁଳନୀୟ

HMM-9241 ORIR

Anil Kumar Panigrahy

'ଆମେ ଖେଳୁ ୱାନ୍-ଡେ-ଇଣ୍ଟରନାଶନାଲ୍
ଆମେ ରଖୁ ୫ ରସନା ଇଣ୍ଟରଭାଲ୍

# ରସନା

କେତେ ନାରଙ୍ଗି ସତେ!

ଭାରତର ସର୍ବାଧିକ ବିକ୍ରି ହେଉଥିବା
ସଫ୍ଟ ଡ୍ରିଙ୍କ କନ୍‌ସେନ୍‌ଟ୍ରେଟ

ଉତ୍ପାଦକ : ପାୟୋମା ଇଣ୍ଡଷ୍ଟ୍ରୀଜ,ଅସାରୱା, ଅହମଦାବାଦ-୩୮୦ ୦୧୬।





Anil Kumar Panigrahi




# ଜହ୍ନ ମାମୁଁ

ସଂସ୍ଥାପକ : 'ଚକ୍ରପାଣି'
ସଞ୍ଚାଳକ : ନାଗି ରେଡ୍ଡୀ

ଏ ସଂଖ୍ୟାର ଚିତ୍ରକଥାରେ ପଢ଼ନ୍ତୁ ଓ ଦେଖନ୍ତୁ ଐତିହାସିକ ଚିତୋର ଦୁର୍ଗର ଲୋମହର୍ଷକ କାହାଣୀ। ଭାରତର ଭିନ୍ନ ଭିନ୍ନ ପ୍ରାନ୍ତରେ କେତେ ବୀରତ୍ୱ ଓ ତ୍ୟାଗର ସ୍ମୃତିରେ ଗୌରବାନ୍ୱିତ ଏପରି ଧ୍ୱଂସାବଶେଷମାନ ରହିଛି। ଚିତୋର ଦୁର୍ଗ ତିନି ଅମର ନାରୀଙ୍କ କାହାଣୀ କହେ। ସେମାନେ ରାଣୀ ପଦ୍ମିନୀ, ମୀରାବାଈ ଓ ଧାଈ ପାନ୍ନା।

## ଅମରବାଣୀ

ସୁହୃଦାଂ ହିତକାମାନାଂ ଯଃ ଶୃଣୋତି ନ ଭାଷିତମ୍ ।
ବିପତ୍ ସନ୍ନିହିତା ତସ୍ୟ, ସ ନରଃ ଶତ୍ରୁନନ୍ଦନଃ ॥

[ଯିଏ ନିଜର ହିତକାମୀ ସୁହୃଦ୍‌ର ପରାମର୍ଶ ପ୍ରତି କର୍ଣ୍ଣପାତ କରେ ନାହିଁ, ତା'ର ବିପଦ ଅନିବାର୍ଯ୍ୟ। ସେ ଶତ୍ରୁଙ୍କୁ ଆନନ୍ଦ ଦିଏ।]

ବର୍ଷ : ୨୦ ମାର୍ଚ୍ଚ ୧୯୮୭ ଅଙ୍କ : ୯

ପ୍ରତି ସଂଖ୍ୟା : ଟ. ୨.୫୦ :: ବାର୍ଷିକ ମୂଲ୍ୟ : ଟ. ୩୦.୦୦

CHITRA

## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ଅତିକାୟ ମଗର

ଲଙ୍ଗ୍ ଆଇଲ୍ୟାଣ୍ଡର ଧୀବରମାନେ ଗୋଟିଏ ପ୍ରକାଣ୍ଡ ମଗର ଧରିଛନ୍ତି । ଏହାର ଓଜନ ୧୫୭୦ କିଲୋଗ୍ରାମ ।

### ଭୂକମ୍ପର ଅଦ୍ଭୁତ ପୂର୍ବାଭାସ !

ଓରିଗାଁର ୩୪ ବର୍ଷ ବୟସ୍କା ଭଦ୍ରମହିଳା ଗ୍ରେଲେ ଟି କିଙ୍ଗ୍‌ଙ୍କର ଯଦି ମୁଣ୍ଡ ବିନ୍ଧା ଆରମ୍ଭ ହୁଏ, ତେବେ ସାରା ସହରର ଲୋକଙ୍କୁ ସାଇରେନ୍ ବଜାଇ ସତର୍କ କରିଦିଆ ହୁଏ । କଥା ହେଲା, ତାଙ୍କ ମୁଣ୍ଡ ବିନ୍ଧା ଭୂମିକମ୍ପର ପୂର୍ବ ଲକ୍ଷଣ ବୋଲି ଜଣାଯାଇଛି । ବାରମ୍ବାର ଏ ଯୋଗାଯୋଗ ଘଟିଲାଣି ।





### ସନ୍ତରଣ ପାରଙ୍ଗମ କାର୍

କାଲିଫୋର୍ଣ୍ଣିଆର ଗୋଟିଏ କାରଖାନାରେ ନୂଆ ଧରଣର ମୋଟର୍ କାର୍ ଟିଏ ପ୍ରସ୍ତୁତ ହୋଇଛି । ସଡ଼କ ଉପରେ ଚାଲୁଁ ଚାଲୁଁ ଆଗରେ ନଈ ପଡ଼ିଲେ ଏ କାର୍ ନିର୍ବିଘ୍ନରେ ସନ୍ତରଣ କରି ସେପାରିକୁ ଚାଲିଯିବ !

### ବରଫ ଦେଶର ଚିତାବାଘ

ବରଫାବୃତ ରାଜ୍ୟରେ ପୂର୍ବେ ଏକ ପ୍ରକାର ଚିତାବାଘ ଦେଖିବାକୁ ମିଳୁଥିଲେ । ସେମାନଙ୍କ ଚମଡ଼ା ଅତ୍ୟନ୍ତ ଦାମିକା ବୋଲି ବିବେକହୀନ ଶୀକାରୀମାନେ ସେମାନଙ୍କୁ ମାରି ପକାଇଥିଲେ । ସେମାନେ ବିଲୁପ୍ତ ବୋଲି ଧାରଣା ହୋଇଥିଲା । ସମ୍ପ୍ରତି କୁଲୁ ଉପତ୍ୟକାରେ ଗୋଟିଏ ତୁଷାର-ଚିତାବାଘର ସନ୍ଧାନ ମିଳିଛି । ସେ ଯେପରି ନିରାପଦ ରହି ପାରିବ, ସରକାର ସେ ଦିଗରେ କିଛି ବ୍ୟବସ୍ଥା କରିଛନ୍ତି ।



ପ୍ରାଚୀନ ସାହିତ୍ୟର ଚରିତ୍ର :

# ରଜି

ଚକ୍ରବର୍ତ୍ତୀ ପୁରୁରବାଙ୍କ ନାତି ରଜି ଅସୀମ ବୀରତ୍ୱ, ମହତ୍ତ୍ୱ ଓ ସାହସ ଗୁଣରେ ଅଳଙ୍କୃତ ଥିଲେ । ଦେବ ଦାନବ ଓ ମାନବ ସମାଜ ଭିତରେ ତାଙ୍କ ପରି ବୀର ଦ୍ୱିତୀୟ ନଥିଲେ ।

ଥରେ ଦେବ ଓ ଦାନବଙ୍କ ମଧ୍ୟରେ ଯୁଦ୍ଧ ଘନେଇ ଆସୁଥାଏ । ଦେବଗଣ ଯାଇ ବ୍ରହ୍ମାଙ୍କୁ ପଚାରିଲେ, "ପିତାମହ ! ଏ ଯୁଦ୍ଧରେ କାହାର ଜୟଲାଭ ହେବ ?"

"ଯାହା ପକ୍ଷରେ ଥାଇ ରଜି ଲଢିବେ, ସେହି ପକ୍ଷର ଜୟଲାଭ ହେବ ।" ବ୍ରହ୍ମା କହିଲେ । କିପରି କେଜାଣି ଦାନବଗଣ ଏହା ଶୁଣି ପକାଇଲେ । ସେମାନେ ରଜୀଙ୍କୁ ଭେଟି ଯୁଦ୍ଧରେ ତାଙ୍କ ସହାୟତା ମାଗିଲେ । ରଜୀ କହିଲେ କି ତାଙ୍କୁ ଯଦି ବିଜୟ ପରେ ଦାନବପକ୍ଷର ରାଜା କରିଦିଅ, ତେବେ ସେ ଦାନବଙ୍କ ପକ୍ଷରେ ଲଢ଼ିବେ । ଦାନବମାନେ ଏ ସର୍ତ୍ତରେ ସମ୍ମତ ନହୋଇ ଫେରିଗଲେ ।

ତା'ପରେ ଦେବଗଣ ଆସି ପହଞ୍ଚିଲେ । ରଜି ସେହି ଏକା ସର୍ତ୍ତ ଦେଲେ । ଦେବଗଣ ସର୍ତ୍ତ ଗ୍ରହଣ କଲେ ।

ଦେବଦାନବ ଯୁଦ୍ଧରେ ସେଥର ରଜୀଙ୍କ ସହାୟତା ଯୋଗୁଁ ଦେବଗଣଙ୍କ ବିଜୟ ହେଲା । ବିଜୟ ପରେ ଇନ୍ଦ୍ର ଆସି ରଜୀଙ୍କୁ ଅଭିବାଦନ ଜଣାଇ କହିଲେ, "ପିତା ଯେପରି ପୁତ୍ରଙ୍କୁ ରକ୍ଷା କରେ, ଆପଣ ସେହିପରି ଆମକୁ ରକ୍ଷା କରିଛନ୍ତି ।"

ରଜୀ ହସିଦେଇ କହିଲେ, "ପିତାର ଉତ୍ତରାଧିକାରୀ ପୁତ୍ର ହୁଏ; ପୁତ୍ରର ଉତ୍ତରାଧିକାରୀ ପିତା ହୁଏ ନାହିଁ । ମୋତେ ଯେତେବେଳେ ତୁମ୍ଭେମାନେ ପିତା ବୋଲି ସମ୍ବୋଧନ କରିଛ, ସେତେବେଳେ ମୁଁ ତୁମମାନଙ୍କଠୁଁ ରାଜତ୍ୱ ନେବି ନାହିଁ ।"





# ଯତିରାଜର ଶିକ୍ଷା

ଦକ୍ଷିଣ ଭାରତର ଗୋଟିଏ ବଡ଼ ଗାଁରେ ରହୁଥାଏ ଯତିରାଜ। ସେ ଥିଲା ଭଲ ଘରର ପିଲା। ପିଲାବେଳେ ବାପା ମା'ଙ୍କୁ ହରାଇ ସେ ଜେଜେବାପା ଦ୍ୱାରା ମଣିଷ ହୋଇଥିଲା। ଜେଜେବାପା ତାକୁ ବହୁତ ସ୍ନେହରେ ପାଳିପୋଷି ବଡ଼େଇ ଥିଲେ। ତା' ପାଇଁ ଜେଜେବାପା ଥିଲେ ଆଦର୍ଶ।

ଜେଜେବାପାଙ୍କଠାରୁ ସେ ଅନେକ କଥା ଶିଖିଥିଲା। ଜେଜେବାପାଙ୍କ ମୃତ୍ୟୁ ପରେ ସେସବୁ ଶିକ୍ଷା ସେ କାମରେ ଲଗାଇବାକୁ ଆରମ୍ଭ କଲା। ଜେଜେବାପା କହୁଥାନ୍ତି, "କୌଣସି ଜିନିଷକୁ ହେୟଜ୍ଞାନ କରିବ ନାହିଁ। ଥରେ ଜଣେ ଲୋକ ବାଟରୁ ଗୋଟାଏ ମଲା ମୂଷା ଉଠାଇ ନେଇଯାଇ ବିଲେଇ ଧରି ବାଟ ଚାଲୁଥିବା ଆଉ ଜଣେ ଲୋକକୁ ତାହା ଦୁଇ ପଇସାରେ ବିକିଥିଲା। ସେହି ଉପାର୍ଜନକୁ ଭଲଭାବେ ଖଟାଇ ସେ ଦିନେ ଧନୀ ହେଲା!"

ଜେଜେଙ୍କ ଏ ଉପଦେଶଟି ଯତିରାଜ ମନକୁ ଖୁବ୍ ପାଇ ଯାଇଥାଏ। ସେ ଦିଆସିଲି ଖୋଳଠୁଁ ଜଳି ସାରିଥିବା ଦିଆସିଲି କାଠି ପର୍ଯ୍ୟନ୍ତ ସବୁ ସାଇତି ରଖେ। ସାରା ଘରେ ଅନାବଶ୍ୟକ ପଦାର୍ଥ ବଢ଼ି ବଢ଼ି ଚାଲିଥାଏ। ଯେତିକି ବଢୁଥାଏ, ଜେଜେଙ୍କ ଉପଦେଶ ସେ ସେତିକି ପରିମାଣରେ ମାନୁଛି ବୋଲି ତା'ର ଧାରଣା ହେଉଥାଏ।

ଯତିରାଜ ସହିତ ଦୂରବର୍ତ୍ତୀ ଗୋଟିଏ ଗାଁର ଝିଅ କମଳା ସହ ବିବାହ ହେଲା। ଯତିରାଜର ତ ଆଉ କେହି ନଥାଏ, ଅତଏବ କମଳା ଘର ସମ୍ଭାଳିବା ଓ ସଜାଡ଼ିବା କଥା। ସେ ଆସି ଘରେ ଏତେ ଆବର୍ଜନା ଦେଖି ପ୍ରଥମେ ଆଶ୍ଚର୍ଯ୍ୟ ହୋଇଗଲା। ସେଦିନ ଯତିରାଜ

ସୁରେନ୍ଦ୍ର



କ୍ଷେତବାଡ଼ ବୁଝିବାକୁ ଯାଇଥାଏ, କମଳା ଘର ପରିଷ୍କାର କରିବା କାମରେ ଲାଗିଗଲା । ଯେତେ ପୁରୁଣା ଠୁଙ୍ଗା, ମୂଷାଖିଆ ଚିରା କନା, ପୁରୁଣା ଭଙ୍ଗା ଦାଦରା ଝାଡ଼ୁ, ଏସବୁ ଗୋଟାଇ ସେ ଆଣି ବାହାରେ ଥିବା ନଗରପାଳିକାର ଆବର୍ଜନା କୁଣ୍ଡରେ ପକାଇବାକୁ ଯାଉଛି, ଯତିରାଜ ତେଣୁ ଆସି ଦେଖି ପକାଇଲା ।

"ଆହା, ଆହା, ଏସବୁ କ'ଣ କରୁଛ ?" ସେ ପାଟିକରି ପଚାରିଲା ।

"ଆବର୍ଜନା ଫୋପାଡ଼ି ଦେଉଛି !" କମଳା ନିର୍ବିକାର ଭାବରେ ଉତ୍ତର ଦେଲା ।

"ଆବର୍ଜନା ? ତମେ ଧନ ସମ୍ପଦକୁ ଆବର୍ଜନା ବୋଲି କହୁଛ ?" ଏହା କହି ଯତିରାଜ ସେସବୁ ଗୋଟାଇ ନେଇ ପୁଣି ଘରେ ଜମା କଲା ।

କମଳାର ବିସ୍ମୟର ସୀମା ରହିଲା ନାହିଁ । ତା' ସ୍ୱାମୀ ଖୁବ୍ ଭଦ୍ର ଓ ଭଲ ମଣିଷ । ସବୁ କଥାରେ ସେ ସଚ୍ଚୋଟ । କିନ୍ତୁ ତାଙ୍କର ଏହା କି ପ୍ରକାର ଢଙ୍ଗ, ସେକଥା ସେ ବୁଝିପାରିଲା ନାହିଁ । ତାକୁ ଯେତେ ବିରକ୍ତ ଲାଗିଲେ ମଧ୍ୟ ଏହି କଥା ଉପରେ ସେ ଝଗଡ଼ା କରିବାକୁ ପ୍ରସ୍ତୁତ ନଥିଲା ।

କିଛିଦିନ ଗଲା । ଦିନେ କମଳାର ଜଣେ ସଖୀ ଅନ୍ୟ କୁଆଡ଼େ ଯିବା ବାଟରେ କମଳା ଘରେ ଘଣ୍ଟାଏ ସକାଶେ ବିଶ୍ରାମ କରିବାକୁ ଆସିଲା । କିଛି ସମୟ ପରେ ସେ କମଳାକୁ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କମଳା! ବାପାଘର ଆଗରୁ ତୁ ସବୁ ଜିନିଷପତ୍ର ଭଲ ଭାବରେ ସଜାଡ଼ି ରଖୁଥିଲୁ । ତୋ କୋଠରି କେତେ ସଫାସୁତୁରା ଥିଲା, ସେକଥା ମୋର ଭଲ ଭାବରେ ମନେ ଅଛି, ତାହା ମୁଁ ଭୁଲିନାହିଁ । କିନ୍ତୁ ଏଠାରେ ତୁ ଏମିତି ସବୁ ଆବର୍ଜନା ରଖିଛୁ କାହିଁକି ?"

ଏ ପ୍ରଶ୍ନ ଶୁଣି କମଳାକୁ କାନ୍ଦ ମାଡିଲା । ସେ କହିଲା, "ଭଉଣୀ, ସବୁଦିନେ ସଫା କରିବି କରିବି ବୋଲି ହେଲାରେ ରହିଯାଉଛି ! ଶୀଘ୍ର ସବୁ ଠିକ୍‌ଠାକ୍ କରିଦେବି ।"

ବାନ୍ଧବୀ ଚାଲିଯିବା ପରେ ଯେତେବେଳେ ଯତିରାଜ କ୍ଷେତରୁ ଫେରିଲା, ସେତେବେଳେ

କମଳା କହିଲା, "ଆଚ୍ଛା, ଏ ଆବର୍ଜନାତକ ଆଉ କେତେଦିନ ସାଇତି ରଖିବ ?"

"କାହିଁକି ? ତମର ସେଥିରେ କ୍ଷତି କ'ଣ ହେଉଛି ? ଆମର ଘର ଛୋଟ ନୁହେଁ । ସବୁ ଗୋଟାଏ କୋଣରେ ଠୁଳ କରି ରଖ ! ଏସବୁ ହଠାତ୍ କେତେବେଳେ କାହା କାମରେ ଆସିବ, କିଏ କହିବ ?" ଯତିରାଜ ଏତିକି କହି ଖିଆପିଆ କରିବାକୁ ବସିଗଲା ।

କମଳା ନିଜ ବିରକ୍ତି ଓ ଦୁଃଖ ମନରେ ମାରି ରହିଲା ।

ଏହାର ଛଅମାସ ପରେ ଦିନେ କମଳାର ସାନ ଭାଇ ପ୍ରସାଦ କୁଣିଆ ହୋଇ ଆସି ପହଞ୍ଚିଲା । ସେ ବି ଘରର ଆବର୍ଜନା ଦେଖି ଆଶ୍ଚର୍ଯ୍ୟ ହେଲା । କମଳା ତା' ପାଖରେ ସବୁ ନିଷ୍କପଟରେ କହିଗଲା । ପ୍ରସାଦ ଭାବଚିନ୍ତି କହିଲା, "ଅପା ! ଭଣୋଇ ମହାଶୟଙ୍କୁ ଏମିତି ବୁଦ୍ଧି ଶିଖାଇବାକୁ ପଡ଼ିବ, ଯାହା ଫଳରେ ସେ ତାଙ୍କ ଜେଜେଙ୍କ ଉପଦେଶ ଭୁଲି ଯିବେ । ଜେଜେ ଯାହା କହିଥିଲେ, ତାହାର ମର୍ମ ହେଲା ପ୍ରତ୍ୟେକ ଜିନିଷର ମର୍ଯ୍ୟାଦା ଅଛି । କୌଣସି ଜିନିଷକୁ ହେୟ ଜ୍ଞାନ କରିବ ନାହିଁ । ଆବର୍ଜନା ସାଇତି ରଖିବାକୁ ସେ କହି ନଥିବେ । ହଁ, ଯଦି ସେ ଏସବୁକୁ କାମରେ ଲଗାଉଥାନ୍ତେ, ତେବେ ସେ ଉପଦେଶର ମର୍ଯ୍ୟାଦା ରହନ୍ତା ।"

ଏହା ପରେ ପ୍ରସାଦ ଭଉଣୀକୁ ଗୋଟାଏ ପରାମର୍ଶ ଦେଲା । ପ୍ରଥମେ ଭଉଣୀ ସେ ନାଟକ




ପାଇଁ ସମ୍ମତି ଦେଉ ନଥିଲା । କିନ୍ତୁ ପ୍ରସାଦର ବଳ, କୌଶଳ ଓ ନେଇଆଣି ଥୋଇ ପାରିବା ବୁଦ୍ଧି ଉପରେ ତା'ର ଖୁବ୍ ଆସ୍ଥା ଥିଲା । ସେ ତେଣୁ ରାଜି ହେଲା ।

ପ୍ରସାଦକୁ ଯତିରାଜ ବି ଖୁବ୍ ସ୍ନେହ କରୁଥାଏ । ପ୍ରସାଦକୁ ଦେଖି ସେ ଖୁସି ହେଲା । ରାତିରେ ଖିଆପିଆ ପରେ ପ୍ରସାଦ କହିଲା, "ବଡ଼ ଗରମ ହେଉଛି । ମୁଁ ବାହାରେ ବାରନ୍ଦାରେ ଶୋଇବି ।"

"ଆରେ, ବାରନ୍ଦାରେ କ'ଣ ଶୋଇବୁ ? ତୋ ଭଣୋଇ ତ କବାଟ ଭିତରୁ କିଳା ଦଶଥର ପରୀକ୍ଷା କରି ଦେଖିବେ !" କମଳା କହିଲା ।

"ସେଥିରେ କ'ଣ ଅଛି ? ମୁଁ ପାଖରେ ଅଳ୍ପ ପିଇବା ପାଣି ରଖିଲେ ଆଉ ଘର ଭିତରକୁ ଆସିବା ଆବଶ୍ୟକ ହେବ ନାହିଁ ।" ଏହା କହି ପ୍ରସାଦ ବାରଣ୍ଡାରେ କବାଟଠୁଁ କିଛି ଦୂରରେ ଖଟ ପାରି ଶୋଇଗଲା ।

ଯତରାଜ ତା'ର ସାବଧାନୀ ଅଭ୍ୟାସ ଅନୁସାରେ କବାଟ ଭଲ ଭାବରେ କିଳି ଦଶଥର ପରୀକ୍ଷା କରି ଶୋଇଲା ।

ମଝିରାତିରେ କୌଣସି ଶବ୍ଦ ଶୁଣି ଯତରାଜର ନିଦ ଭାଙ୍ଗିଗଲା । ସେ ତରତରରେ କମଳାକୁ ଉଠାଇଲା । ଉଭୟେ ଦେଖିଲେ ଅଳ୍ପ ଦୂରରେ ଗୋଟାଏ ଛାୟା ଠିଆ ହୋଇଛି ।

ଯତରାଜ ଓ କମଳା ତାକୁ ଦେଖି ଦେଲେଣି ଜାଣି ଛାୟା ହଠାତ୍ ଆବର୍ଜନା ଗଦି ଭିତରୁ ଗୋଟାଏ ଭଙ୍ଗା ବୋତଲ ଉଠାଇ ଆଣି ଛୁରୀ ଭଳି ସେମାନଙ୍କ ଆଡ଼କୁ ଉଞ୍ଚାଇ କହିଲା, "ଖବରଦାର ! ଚିତ୍କାର କରିବ ତ ଏହାକୁ ଭୁଷି ଦେବ !"

ଯତରାଜ ଓ କମଳା ନିର୍ବାକ ହୋଇ ଠିଆ ହୋଇ ରହିଲେ ।

ଆବର୍ଜନାଗଦା ଭିତରୁ ଦୁଇଖଣ୍ଡି ଦଉଡ଼ି ଉଠାଇ ନେଇ ସେ ଚଟାପଟ ଯତରାଜକୁ ବାନ୍ଧି ପକାଇଲା । ପରେ ପରେ କମଳାକୁ ବି ବାନ୍ଧି ପକାଇଲା । ସେ କଣ୍ଠସ୍ୱର ଏପରି ବିକୃତ କରି ଉଚ୍ଚ ଭାବରେ କଥା କହୁଥାଏ ଯେ ଯେ କୌଣସି ଲୋକକୁ ଡର ଲାଗିବ !

ସେ ଘର ଭିତରୁ ବାସନକୁସନ ଓ ଅନ୍ୟ ମୂଲ୍ୟବାନ ଜିନିଷମାନ ବାହାର କରି ଆଣି ଦୁଇଟି



ଗଣ୍ଠିଲି ବାନ୍ଧିଲା । ସେ କହୁଥାଏ, "ବାଃ, ମୋ କାମରେ ଆସିଲା ଭଲ ଭଙ୍ଗା ବୋତଲ, ରସି, ସବୁ ଜମା କରି ରଖିଛ ଦେଖୁଛି । ଛିଣ୍ଡା କନା ବି ପଡ଼ିଛି । ତମ ମୁହଁରେ ବୁଜା ଦେଇ ପାରନ୍ତି, କିନ୍ତୁ ତମେମାନେ ଚିତ୍କାର କରିବ ନାହିଁ ବୋଲି ମୋର ଆଶା ।"

ଜିନିଷପତ୍ର ଧରି ସେ ବାହାରିଯିବା ବେଳକୁ ପୁଣି କହିଲା, "ଏ ଆବର୍ଜନାତକ କାହିଁକି ରଖିଛ ? ଭିତରେ ନୋଟ ତାଡ଼ା ଲୁଚାଇ ରଖିଛ କି ?"

"ନା, ଭିତରେ କିଛି ନାହିଁ ।" କାକୁସ୍ଥ ସ୍ୱରରେ ଯତିରାଜ କହିଲା ।

"ମୋତେ ବୋକା ଠଉରାଇଛ ? ବିନା କାରଣରେ ଘରେ କେହି ଆବର୍ଜନା ଜମାକରି ରଖେ ? ମୋର ବେଳଥିଲେ ସବୁ ଖିନ୍‌ଭିନ୍‌ କରି ଦେଖନ୍ତି । ବେଶ୍‌ । ମୁଁ ଏଥିରେ ନିଆଁ ଲଗାଇ ଦେଉଛି । ନୋଟ ତାଡ଼ା ଯଦି ନଥିବ, ତେବେ ତମର ଚିନ୍ତା କରିବାର କିଛି ନାହିଁ !" ଡାକୁ କହିଲା ।

ଭୟଭୀତ ହୋଇ ପ୍ରସାଦ କହିଲା, "ନା, ନା, ନିଆଁ ଗୃହକୁ ଉଠି ପଡ଼ିବ ! ବିଶ୍ୱାସ କର, ଏହା ଭିତରେ ନୋଟ ତାଡ଼ା ନାହିଁ । ଖାଲି ମୋର ଅଭ୍ୟାସ ଯୋଗୁଁ ଏହା ରଖିଛି !"

"ମୋର ବି ନିଆଁ ଲଗାଇବା ଅଭ୍ୟାସ ।" ଏହା କହି ଡାକୁ ବି ଆବର୍ଜନା ଗଦିରେ ନିଆଁ ଧରାଇ ଦେଲା । ଅନେକ ପୁରୁଣା ଦିଆସିଲି ଖୋଳ ଓ କାଗଜପତ୍ର ଥିବା ଯୋଗୁଁ ନିଆଁ ସଙ୍ଗେ ସଙ୍ଗେ ଧରିଗଲା । ଡାକୁ ପଳାଇଗଲା ।



ଯତିରାଜ ବନ୍ଧନ ଛିଣ୍ଡାଇବାକୁ ଝାଣି ଭଡ଼ ହୋଇ ପ୍ରସାଦକୁ ପାଟି କରି ଡାକିଲା । ପ୍ରଥମେ ପ୍ରସାଦଠୁଁ କିଛି ଉତ୍ତର ଆସିଲା ନାହିଁ, କିନ୍ତୁ ଦୂରରୁ ଗୋଟାଏ ରଡ଼ି ଶୁଭିଲା । ଦୁଇ ମିନିଟ ପରେ ପ୍ରସାଦ ଜୋରେ ଜୋରେ ନିଃଶ୍ୱାସ ନେଇ ପଶି ଆସିଲା । ହାତରେ ତା'ର ଦୁଇଟି ଗଣ୍ଠିଲି ।

ସେ ପ୍ରଥମେ ଭଣୋଇ ଭଉଣୀଙ୍କୁ ମୁକ୍ତ କଲା ଓ କହିଲା, "ଡାକୁ ଆଗରୁ ଡେଇଁପଡ଼ି ମୁଁ ହଠାତ୍ ଏମିତି ରଡ଼ି କରିଦେଲି ଯେ ଡାକୁ ଛନିଆ ହୋଇ ଦୁଇ ଗଣ୍ଠିଲି ପକାଇ ଦେଇ ଚମ୍ପଟ ଦେଲା !"

ସେତେବେଳକୁ ପ୍ରସାଦର ରଡ଼ିରେ ଆକୃଷ୍ଟ ହୋଇ ପ୍ରତିବେଶୀ ଦୁଇ ଚାରିଜଣ ଆସି ପହଞ୍ଚି ଗଲେଣି । ସେମାନେ ଆବର୍ଜନାବାକ୍ସ ଉପରୁ ନିଆଁ ଲିଭାଇଲେ ।

"ଆଚ୍ଛା, ଭିତରୁ ଯଦି କବାଟ ବନ୍ଦ ଥିଲା, ଡାକୁ ପଶିଲା କିପରି ?" ସେମାନେ ଏ ପ୍ରଶ୍ନ କରି ତଦନ୍ତ ଆରମ୍ଭ କଲେ । ଦେଖିବା ବେଳକୁ ବାରନ୍ଦାରେ ଜମା ହୋଇଥିବା କେତେକ ଭଙ୍ଗା ସରୁ ଲୁହା କବାଟ ସନ୍ଧି ଦେଇ ପୂରେଇ ସେ ଭିତର ପଟରେ ଥିବା ଛିଟିକିଣି ଖୋଲି ପାରିଛି । ସେ ଲୁହା ଶିକୁଳିତକ ଗତବର୍ଷ ଦୀପାବଳିରେ ଯେଉଁ ବାଣ ଫୁଟିଥିଲା, ସେହି ବାଣରୁ ବାହାରିଥିଲା ।

"ଯତିରାଜ ! ତମେ ଘରେ ଏତେ ଆବର୍ଜନା କାହିଁକି ଜମା କରି ରଖିଲ ?" ଜଣେ ପ୍ରତିବେଶୀ ପଚାରିଲେ ।

"ହଁ ଯତିଭାଇ, ତମେ ଯଦି ଏସବୁ ବ୍ୟବହାରରେ ଲଗାଉଥାନ୍ତ, ତେବେ ଜମାକରିବାର କିଛି ଅର୍ଥ ଥିଲା !"

"ବ୍ୟବହାର ନକରି ଆବର୍ଜନା ସଞ୍ଚୟ କରିବାର କିଛି ମାନେ ହୁଏ ?" ଅନ୍ୟମାନେ କହିଲେ ।

ଯତିରାଜ କିଛି କହିଲା ନାହିଁ, କିନ୍ତୁ ପରଦିନରୁ ତା' ଦୃଷ୍ଟିକୋଣ ବଦଳିଗଲା । ସେ ଆଉ ଆବର୍ଜନା ଜମା କରି ରଖେ ନାହିଁ !





# ଭଦ୍ର ଷଣ୍ଢ

ଏକ ନଗରରେ ଥିଲେ ଜଣେ ବିଶିଷ୍ଟ ପେଷାଦାର ଚିତ୍ରଶିଳ୍ପୀ । ନାମ ମାଧବକୁମାର । ତାଙ୍କ ଅଙ୍କା ଚିତ୍ରମାନ ରାଜା ଜମିଦାର ଓ ଧନୀମାନେ କିଣି ନେଉଥିଲେ । ଅନେକ ଶିଳ୍ପୀ ଆସି ତାଙ୍କଠୁଁ ଚିତ୍ରବିଦ୍ୟା ଶିକ୍ଷା କରୁଥିଲେ ।

ଶିଳ୍ପୀ ବହୁତ ଅର୍ଥ ଉପାର୍ଜନ କଲେ ଓ ବଡ଼ କୋଠା ବନାଇ ସୁଖରେ ରହିଲେ ।

ଦିନେ ସେ ଗୋଟାଏ ନୂଆ ଅଙ୍କନ ଶେଷ କଲେ । ତାହା ଦୁଇଟି ଷଣ୍ଢ ଭିତରେ ଲଢ଼େଇର ଦୃଶ୍ୟ ।

"ଏ ଷଣ୍ଢ ଦୁଇଟି ଏଡ଼େ ଜୀବନ୍ତ ଦିଶୁଛନ୍ତି ଯେ ମୁଁ ତ ଦେଖି ଡରିଗଲି । ମୋ ଉପରକୁ କାଳେ ମାଡି ଆସିବେ ବୋଲି ମୁଁ ଧିରେ ଧିରେ ପଛେଇ ଯାଉଥିଲି ।" ଜଣେ ଶ୍ରାବକ କହିଲେ ।

ଅନ୍ୟ ଶ୍ରାବକମାନେ ତାଙ୍କୁ ବାହାବା ଦେଇ କହିଲେ, "ଶିଳ୍ପୀ ବର! ଏ ଚିତ୍ର ଖୋଦ୍ ମହାରାଜାଙ୍କୁ ଦେଖାଇବା କଥା । ସେ ଏହାକୁ କିଣିନେଇ ତାଙ୍କ ଚିତ୍ରଶାଳାରେ ରଖିବେ ।"

ଶିଳ୍ପୀଙ୍କ ମନକୁ ଏକଥା ପାଇଲା । ସେ ରାଜଧାନୀ ଅଭିମୁଖେ ବାହାରି ପଡ଼ିଲେ । ତାଙ୍କ ସାଙ୍ଗରେ କେତେଜଣ କମ୍ ଜଣାଶୁଣା ଚିତ୍ରଶିଳ୍ପୀ ବି ଯାଉଥାନ୍ତି ।

ବାଟରେ ଗୋଟାଏ ଗାଁରେ ସେମାନେ ବିଶ୍ରାମ ନେଲେ । ଗାଁ ଲୋକେ କୌତୁହଳୀ ହୋଇ ଆଗନ୍ତୁକମାନଙ୍କୁ ଦେଖୁଥାନ୍ତି । ବଡ ଶିଳ୍ପୀଙ୍କ ଜଣେ ଚେଲା ସେମାନଙ୍କୁ କହିଲେ, "ତମ୍ଭର ଭାଗ୍ୟ, ତମ ଗାଁରେ ବିଖ୍ୟାତ ଚିତ୍ରଶିଳ୍ପୀ ମାଧବକୁମାର ଆଜି ଅତିଥି ହୋଇଛନ୍ତି !"

- ପୂର୍ଣ୍ଣଚନ୍ଦ୍ର

ଗାଁ ଲୋକେ ମାଧବକୁମାରଙ୍କୁ ନମସ୍କାର କଲେ । ଚିତ୍ରଶିଳ୍ପୀ ଖୁସି ହୋଇ ପଚାରିଲେ, "କ'ଣ, ତମେମାନେ ଚିତ୍ରକଳାର କିଛି ବୁଝ ? ଦେଖିବାକୁ ଚାହଁ ?"

ଗାଁ ଲୋକେ ଆଗ୍ରହରେ ହଁ ଭରିଲେ ।

"ହେଉ । ଦେଖାଇବା ।" ଏହା କହି ମାଧବକୁମାର ଷଣ୍ଢ ଚିତ୍ରର ଆବରଣ ଖୋଲି ଦେଲେ । ଗାଁ ଲୋକେ ଚିତ୍ର ଆଡ଼କୁ ଚାହିଁବା ସଙ୍ଗେ ସଙ୍ଗେ ପରସ୍ପର ଅନାଅନି ହେଲେ ।

"କିପରି ଲାଗୁଛି ? ଏ ଚିତ୍ରରେ ଯେପରି ଜୀବନ୍ତ ଭାବରେ ଷଣ୍ଢ ଲଢ଼େଇ ଦେଖାଇ ଦିଆଯାଇଛି, ତାହା କମ୍ କଥା ନୁହେଁ ।" ମାଧବକୁମାରଙ୍କର ଜଣେ ଚେଲା କହିଲେ ।

କିନ୍ତୁ ଗ୍ରାମବାସୀମାନେ କିଛି କହିଲେ ନାହିଁ ।

"କିଛି କହୁନାହଁ କାହିଁକି ?" ଆଉ ଜଣେ ଚେଲା ପଚାରିଲେ ।

ହଠାତ୍ ଗୋଟିଏ ଗ୍ରାମ୍ୟ ତରୁଣ ହସି ପକାଇଲା ।

ବିରକ୍ତ ହୋଇ ମାଧବକୁମାର କହିଲେ, "ଅରସିକେଷୁ ରସସ୍ୟ ନିବେଦନମ୍ ହୋଇଗଲା ଦେଖୁଛି । ହଇହୋ ଯୁବକ, ହସୁଛ କାହିଁକି ?"

"ବାବୁ, ଏ ଷଣ୍ଢ ସହରର ଭଦ୍ର ଷଣ୍ଢ ହୋଇଥିବେ ପରା !" ଯୁବକଟି କହିଲା ।

"ବୋଇଲେ ?" ମାଧବକୁମାର ଅତ୍ୟନ୍ତ ବିସ୍ମିତ ହୋଇ ପଚାରିଲେ ।

"ବାବୁ, ଆମ ଗାଁ ଗଣ୍ଡାର ଷଣ୍ଢମାନେ ଯୁଝିଲା ବେଳେ ଲାଞ୍ଜ ଉପରକୁ ଟେକିଥାନ୍ତି । ଆପଣଙ୍କର ଏ ଦୁଇ ଷଣ୍ଢ କେମିତି ଲାଞ୍ଜ ତଳକୁ କରି ରଖିଛନ୍ତି ! ସହରି ଷଣ୍ଢଙ୍କ ଆଦବ୍ ଅଲଗା !"

ଯୁବକର ଏ ମନ୍ତବ୍ୟ ପରେ ସବୁ ଲୋକେ ହସି ଉଠିଲେ । ଶିଳ୍ପୀ ମହୋଦୟ ଯଥାଶୀଘ୍ର ଛବିଟି ସହ ସେଠାରୁ ପ୍ରସ୍ଥାନ କଲେ । ତେବେ ରାଜଧାନୀ ଆଡ଼େ ନ ଯାଇ ନିଜ ସହରକୁ ଫେରିଗଲେ ।






[ ୯ ]

[ରାଜକୁମାରୀ କାନ୍ତିମତୀଙ୍କଠାରୁ ଚନ୍ଦ୍ରସେନ ଜାଣିଲେ ଯେ ରାଜକୁମାରୀଙ୍କ ବାପା ରାଜା ବୀରସିଂହଙ୍କୁ କପିଳପୁର ଦୁର୍ଗରେ ବନ୍ଦୀ କରି ରଖା ଯାଇଛି । ଚନ୍ଦ୍ରସେନ ନିଜ ସୈନ୍ୟବାହିନୀ ଧରି କପିଳପୁର ପହଞ୍ଚିଲେ । ସେ ଦେଖିଲେ ଦୁର୍ଗ ଉପରେ ଅବରୋଧକାରୀ ଶତ୍ରୁ ପକ୍ଷର ଦୁଇଜଣ ସୈନିକ ଦୁଇ ଭୟଙ୍କର ପକ୍ଷୀଙ୍କୁ ଧରି ପହରା ଦେଉଛନ୍ତି । ଅମରପାଳ ପରାମର୍ଶ ଦେଲା : ମଶାଲ୍ ଦ୍ୱାରା ସେ ପକ୍ଷୀଙ୍କୁ ଜବତ୍ କରିପାଇ ପାରିବ । ତା'ପରେ···]

ଅମରପାଳର ପ୍ରସ୍ତାବ ଯେ କାର୍ଯ୍ୟକାରୀ ହେବ, ସେଥିରେ ଚନ୍ଦ୍ରସେନଙ୍କର ସନ୍ଦେହ ନଥିଲା । ସେହିଦିନ ସକାଳେ ପୁଣି ଅମରପାଳ ସେ ଭୟଙ୍କର ପକ୍ଷୀମାନେ ରହୁଥିବା ଗୁଳଘର-ମାନଙ୍କରେ ନିଆଁ ଲଗାଇ ସେମାନଙ୍କର ସର୍ବନାଶ କରିଥିଲା ! ତେଣୁ ଏଠାରେ ସେ କୌଶଳ କାମ ନ ଦେବ କିଆଁ ?

କିନ୍ତୁ ରାକ୍ଷସ ଉଗ୍ରାକ୍ଷ ସେ ପକ୍ଷୀମାନଙ୍କୁ ଏତେ ଭୟ କରୁଥାଏ ଯେ ସେ ସହଜରେ ଅମରପାଳର ଯୋଜନା ଉପରେ ଆସ୍ଥା ସ୍ଥାପନ କରିପାରୁ ନଥାଏ । ବିଚରା ରାକ୍ଷସ ସେ ପକ୍ଷୀମାନଙ୍କ ଦ୍ୱାରା କମ ହଇରାଣ ଭୋଗି ନଥିଲା । ଏପରିକି ନିଜେ ମଧ୍ୟ ସେମାନଙ୍କ ଦ୍ୱାରା ଖଣ୍ଡିଆ ଖାବରା ହୋଇଥିଲା ।




ଅମରପାଳ ଚନ୍ଦସେନଙ୍କୁ ଅନାଇ କହିଲେ, "ମହାରାଜ, ବର୍ତ୍ତମାନ ଆପଣଙ୍କ ଆଦେଶକୁ ଅପେକ୍ଷା କରୁଛୁଁ । ଆପଣ କହିବା ମାତ୍ରେ କିଲ୍ଲା ଉପରେ ଆକ୍ରମଣ ଆରମ୍ଭ ହେବ ।"

ତା' ରାକ୍ଷସ ଅନୁଚରମାନଙ୍କୁ ସମ୍ବୋଧନ କରି ଉଗ୍ରାକ୍ଷ କହିଲା, "ସମସ୍ତେ ପ୍ରସ୍ତୁତ ତ ?"

"ପ୍ରସ୍ତୁତ, ସର୍ଦ୍ଦାର !" ରାକ୍ଷସ ଅନୁଚରମାନେ କହିଲେ ।

"ଶୁଣ ! ତମମାନଙ୍କ ଭିତରୁ କେତେଜଣ ବଡ଼ ବଡ଼ ଗଛ ଉପାଡ଼ି ଆଣି ନଚେତ୍ କିଲ୍ଲା ବାହାରେ ଥିବା ଏ ସ୍ତମ୍ଭ ଉପାଡ଼ି ଆଣି ତାହା ଦ୍ୱାରା କିଲ୍ଲା ଦ୍ୱାରରେ ଆଘାତ କର । ଆଉ କେତେଜଣ କାନ୍ଥ ଡେଇଁପଡ଼ି ଖୋଲିବାର ଚେଷ୍ଟା କର ।" ଉଗ୍ରାକ୍ଷ ନିଜ ଅନୁଚରମାନଙ୍କୁ ଏହା କହି ଚନ୍ଦସେନଙ୍କ ଆଡ଼କୁ ଅନାଇ କହିଲା, "ମହାରାଜ, ଖାଲି କିଲ୍ଲାର ମୁଖ୍ୟ ଦ୍ୱାର ପଥରେ ନୁହେଁ, ଆମେ କିଲ୍ଲାକୁ ଚୁତୁର୍ଦ୍ଦିଗରୁ ଆକ୍ରମଣ କଲେ ଭଲ ହେବ । ତାହା ହେଲେ ଶତ୍ରୁମାନେ ବିଚ୍ଛେଇ ପଡ଼ି ଆମକୁ ସାମ୍ନା କରିବେ । ଫଳରେ ସେମାନଙ୍କ ଶକ୍ତି କମ୍ ହେବ । ଖାଲି ସେ ଭୟଙ୍କର ପକ୍ଷୀ ଦୁଇଟି ଆମକୁ ଆକ୍ରମଣ ନକଲେ ହେଲା ।"

"ଉଗ୍ରାକ୍ଷ ! ପକ୍ଷୀମାନଙ୍କ କବଳରୁ ତମକୁ ରକ୍ଷା କରିବା ଭାର ତମେ ମୋ ଉପରେ ଛାଡ଼ିଦିଅ ।" ଅମରପାଳ ଏହା କହି ତା' ଅନୁଚରମାନଙ୍କୁ କିଛି ସଙ୍କେତ ଦେଲା ।

"ସତରେ ମଶାଲ୍ ଦେଖିଲେ ଏ ପକ୍ଷୀମାନେ ଡରିମରି ପଳାଇଯିବେ ? ଆମ ଆଡ଼କୁ ତଡ଼ି ଆସିବେ ନାହିଁ ?" ସେ ପଚାରିଲା ।

ଉଗ୍ରାକ୍ଷର କଥା ପ୍ରତି ଧ୍ୟାନ ନଦେଇ ଅମରପାଳ ନିଜ ସୈନିକମାନଙ୍କ ଆଡ଼କୁ ଅନାଇ ପାଟି କରି ପ୍ରଶ୍ନ କଲା, "ଆରେ ଭାଇ, ତମେମାନେ ମଶାଲ ପ୍ରସ୍ତୁତ କରୁଛଟି ? ବିଳମ୍ବ କରି ଲାଭ ନାହିଁ । ଥରେ ଜଳିବା ପରେ ସେ ମଶାଲ୍ ଯେମିତି ସହଜରେ ଲିଭି ନଯିବ !"

ସୈନିକମାନଙ୍କ ଭିତରୁ କେତେଜଣ ଏ ନିର୍ଦ୍ଦେଶ ପାଳନ କରିବା ନିମନ୍ତେ ପ୍ରସ୍ତୁତ ହୋଇ ରହିଥିଲେ । ସେମାନେ ଅଳ୍ପ ସମୟ ଭିତରେ ମଶାଲ୍ ବନାଇ ନେଇ ଆସିଲେ ।

"କ'ଣ ହେଲା ! ତୁ ଛାର ମନୁଷ୍ୟ ପୁଣି ମୋ ଭଳି ରାକ୍ଷସବୀରକୁ ରକ୍ଷା କରିବୁ ? ଏକଥା କହିଲା ଭଳି ବହପ ତୋର ହେଲା କିପରି ?" ଉଗ୍ରାକ୍ଷ ଅମରପାଳ ଉପରେ ରାଗିଯାଇ ଗଦା ଉଠାଇଲା ।

ରାଜକୁମାରୀ କାନ୍ତିମତି ଉଗ୍ରାକ୍ଷକୁ ରୋକି ଦେଇ କହିଲେ, "ଥାଉ, ରାକ୍ଷସବୀର, ଥାଉ । ତମେ ଅଧୈର୍ଯ୍ୟ ହେଲେ ଚଳିବ ?" ଏହା ପରେ ସେ ଚନ୍ଦ୍ରସେନଙ୍କୁ କହିଲେ, "ମହାରାଜ, ଆପଣ ଜାଣନ୍ତି ମୋ ପିତା ଏ କିଲ୍ଲା ଭିତରେ ବନ୍ଦୀ । ଏତେବେଳେ ନିଜ ଭିତରେ ଦ୍ୱନ୍ଦ୍ୱ କରି ସମୟ ନଷ୍ଟ କରିବା ଉଚିତ କି ?"




ଚନ୍ଦ୍ରସେନ କହିଲେ, "ଠିକ୍ କଥା, ରାଜକୁମାରୀ ।" ଏହାପରେ ସେ ଉଗ୍ରାକ୍ଷ ଆଡ଼େ ଅନାଇ କହିଲେ, "ରାକ୍ଷସରାଜ ! ତମ ବୀରତ୍ୱ ବର୍ତ୍ତମାନ କ'ଣ ଅମରପାଳ ଉପରେ ଦେଖାଇବା ଲୋଡ଼ା ? ଶତ୍ରୁ ପକ୍ଷକୁ ଓ ସେ ଭୟଙ୍କର ପକ୍ଷୀଙ୍କୁ ଜବଦ୍ କରିବା ଦିଗରେ ସିନା ନିଜ ବୀରତ୍ୱ ପ୍ରୟୋଗ କରନ୍ତୁ !"

ଚନ୍ଦ୍ରସେନ ଏପରି କହିବାରୁ ରାକ୍ଷସର ଜ୍ଞାନୋଦୟ ହେଲା ଓ ସେ ନିଜ ଅନୁଚରମାନଙ୍କ ଆଡ଼କୁ ବୁଲିପଡି କହିଲା, "ଆରେ, ବୋକାଙ୍କ ଭଳି ଏମିତି ଅନାଇ ରହିଛ କ'ଣ ? ମୋ ଆଦେଶ ପାଳନ କର !"

ସଙ୍ଗେ ସଙ୍ଗେ ରାକ୍ଷସମାନେ ଗୋଟାଏ ବିରାଟ ସ୍ତମ୍ଭ ଉପାଡି ଆଣି କିଲ୍ଲାର ଦ୍ୱାର ଦେଶରେ ତାକୁ ପ୍ରହାର କରିବାକୁ ପ୍ରସ୍ତୁତ ହେଲେ । ସେମାନଙ୍କ ପଛେ ପଛେ ଜଳନ୍ତା ମଶାଲ ଧରି ଚନ୍ଦ୍ରସେନଙ୍କ ସୈନିକମାନେ ଅଗ୍ରସର ହେଲେ । ଉଗ୍ରାକ୍ଷ ନିଜର ପାଷାଣ ଗଦା ଧରି ଭୀଷଣ ଗର୍ଜନ କରି ତା' ସୈନିକ-ମାନଙ୍କୁ ଉତ୍ସାହ ଦେବାକୁ ଲାଗିଲା । ଗୃହୁଁ ଗୃହୁଁ କିଲ୍ଲାର ଦ୍ୱାର ଦେଶରେ ତୁମୁଳ ହଟ୍ଟଗୋଳ ଲାଗିଗଲା । କାନ୍ତିମତି ଓ ଚନ୍ଦ୍ରସେନ ଘୋଡ଼ା ଚଢ଼ି ନିଜେ ସୈନ୍ୟଙ୍କୁ ନିର୍ଦ୍ଦେଶ ଦେଉଥାନ୍ତି ।

କିଲ୍ଲା ଭିତରେ ଓ ଉପରେ ଥିବା ସୈନିକମାନେ ଏ ଆକସ୍ମିକ ଆକ୍ରମଣକୁ ସାମ୍ନା କରିବା ନିମନ୍ତେ ଯଥାଶୀଘ୍ର ପ୍ରସ୍ତୁତ




ହୋଇଗଲେ । ସେମାନେ କାନ୍ଥ ଉପରୁ ଭୀଷଣ ଭାବରେ ତୀର ବର୍ଷା କରିବାକୁ ଲାଗିଲେ । ଶାନ୍ତସେନଙ୍କ ସୈନ୍ୟଦଳ ମଧ୍ୟ ସେମାନଙ୍କ ଉପରକୁ ଲକ୍ଷ୍ୟ କରି ତୀର ମାରିଲେ । ଉଭୟ ପକ୍ଷର ସୈନିକମାନଙ୍କ ଉତ୍ତେଜନାପୂର୍ଣ୍ଣ ଚିତ୍କାରରେ ସେ ମୂଲକ କମ୍ପମାନ ହେବାକୁ ଲାଗିଲା । ଉଗ୍ରାକ୍ଷର ରାକ୍ଷସ ଅନୁଚରମାନେ ସେ ପ୍ରକାଣ୍ଡ ଖମ୍ବ ଧରି କାନ୍ଥ ଦ୍ୱାରରେ ଆଘାତ ଆରମ୍ଭ କରି ଦେଇଥାନ୍ତି । ଅନ୍ୟ କେତେକ ରାକ୍ଷସ କବାଟ ତଳୁ ତାଡ଼ି ପକାଇବାର ଚେଷ୍ଟା କରୁଥାନ୍ତି ।

ହଠାତ୍ ଆକାଶରୁ କୌଣସି ଶବ୍ଦ ଶୁଭିଲା । ସମସ୍ତେ ଉପରକୁ ଅନାଇ ଦେଖିଲେ, ଘୂର୍ଣ୍ଣିବାତ୍ୟା ସୃଷ୍ଟି କରି ସେ ଦୁଇ ଭୟଙ୍କର ପକ୍ଷୀ ଉଡ଼ୁଛନ୍ତି ଏବଂ ତଳକୁ ଝାମ୍ପ ମାରିବାକୁ ଉଦ୍ୟମ କରୁଛନ୍ତି ।

ଅମରପାଳ ପାଟି କରି ନିଜ ପକ୍ଷର ସୈନିକମାନଙ୍କୁ କହିଲା, "ବୀର ସୈନ୍ୟମାନେ, ଏ ପକ୍ଷୀଙ୍କୁ ଭୟ ନାହିଁ । ଜାଣିଥାଅ ଏମାନେ ଯେତେ ହିଂସ୍ର ହେଲେ ମଧ୍ୟ ଅଗ୍ନିକୁ ଏମାନଙ୍କର ଭୀଷଣ ଭୟ । ତମେମାନେ ମଶାଲ ଉପରକୁ ଟେକି ଧର । ପକ୍ଷୀ ଦୁଇଟି ପାଖକୁ ଆସିବା ମାତ୍ରେ ସେମାନଙ୍କୁ ମଶାଲ ଦ୍ୱାରା ଆକ୍ରମଣ କର । ସେମାନଙ୍କ ପକ୍ଷରେ ନିଆଁ ଲାଗିଗଲେ ସେମାନେ ଆଉ କିଛି କରି ପାରିବେ ନାହିଁ । ଭୟ ନାହିଁ !"

ତଥାପି ସେ ଭୀଷଣ ପକ୍ଷୀଙ୍କ ଆଗରେ ସୈନିକମାନେ ଡରି ଯିବାର ଦେଖି ସେ ପୁଣି କହିଲା, "ଭାଇମାନେ, ବର୍ତ୍ତମାନ ଆମ ସାହସ ଓ ପ୍ରାଣମୂର୍ଚ୍ଛା ଲଢ଼େଇ ଉପରେ ଆମର ବଞ୍ଚିବା ନ ବଞ୍ଚିବା ପ୍ରଶ୍ନ ନିର୍ଭର କରୁଛି । ଆମେ ଟିକିଏ ପଛଘୁଞ୍ଚା ଦେଲେ ଆମର ପରାଜୟ ଓ ପରାଜୟ ସାଙ୍ଗକୁ ମୃତ୍ୟୁ ଅନିବାର୍ଯ୍ୟ । ଅତଏବ ଯାହା ହେଉ ନା କାହିଁକି ଆମକୁ ଅଗ୍ରସର ହେବାକୁ ପଡ଼ିବ ।"

ସୈନ୍ୟମାନେ କୋଳାହଳ କରି ପକ୍ଷୀମାନଙ୍କ ଆଡ଼କୁ ମଶାଲ ଟେକି ଧରିଲେ । ଅମରପାଳର ଧାରଣା ସତ୍ୟ ପ୍ରମାଣିତ ହେଲା । ସେ ଭୟଙ୍କର ପକ୍ଷୀ ଦୁଇଟି ମଶାଲ ଦେଖି




ଉଡ଼ିଯାଇ ତଳକୁ ଝାମ୍ପ ନ ମାରି ଉପରକୁ ଉଠିବାକୁ ଲାଗିଲେ । ଗୋଟିଏ ପକ୍ଷୀ ଉପରେ ସବାର୍ ହୋଇଥିବା ଜଣେ ବ୍ୟାଘ୍ରଚର୍ମଧାରୀ ଲୋକ ନିଜ ଭଲ୍ଲ ଦ୍ୱାରା ପକ୍ଷୀକୁ ଆଘାତ କରିବାରୁ ପକ୍ଷୀଟି ତଳକୁ ଆସିବା ପରିବର୍ତ୍ତେ ଭୀଷଣ ଭାବରେ ନିଜ ଦେହ ଝାଡ଼ି ଦେଇ ଆହୁରି ଉପରକୁ ଉଠିଗଲା । ସେ ବେଗ ସମ୍ଭାଳି ନପାରି ଆରୋହୀ ଜଣକ ତଳକୁ ଖସି ପଡ଼ିଲା । ତା'ପରେ ପକ୍ଷୀ ଉପରକୁ ଉଠି ଅଦୃଶ୍ୟ ହୋଇଗଲା । ଗୋଟିଏ ପକ୍ଷୀର ସେ ଗତି ଦେଖି ଅନ୍ୟ ପକ୍ଷୀଟି ବି ପଳାଇ ଗଲା । ତା' ଆରୋହୀର କ'ଣ ହେଲା କେହି ବୁଝି ପାରିଲେ ନାହିଁ ।

ପକ୍ଷୀ ଦୁଇଟି ଏପରି ଭାବରେ ପଳାଇ ଯିବାର ଦେଖି ଶତ୍ରୁ ରାଜା ନାଗବର୍ମାର ସୈନିକମାନେ ଦୁର୍ଗ ଛାତରୁ ପଳାଇ ଯାଇ ଦୁର୍ଗ ଭିତରେ ଆତ୍ମ-ଗୋପନ କରିବାକୁ ଚେଷ୍ଟା କଲେ । ସେମାନେ ଏପରି ଛାଦ ଭଙ୍ଗ ଦେବା ମାତ୍ରେ ଆନନ୍ଦରେ ଜୟଧ୍ୱନି ଦେଇ ଚନ୍ଦ୍ରସେନଙ୍କ ସୈନିକମାନେ ବିନା ବାଧାରେ କିଲ୍ଲାର ଦ୍ୱାର ଭାଙ୍ଗିବାକୁ ଲାଗିଲେ । ଅଳ୍ପ ସମୟ ଭିତରେ ସେମାନେ ସେ କାମ ହାସଲ୍ କଲେ । ଦୁର୍ଗ ଭିତରକୁ ସେମାନେ କୋଳାହଳ କରି ପଶିଗଲେ ଓ ଶତ୍ରୁ ସୈନ୍ୟମାନଙ୍କୁ ବଧ ବା ବନ୍ଦୀ କରିବାକୁ ଲାଗିଗଲେ ।

ସେମାନଙ୍କ ପୂରା ଦୁର୍ଗ ଅଧିକାର କରିନେବାକୁ କୌଣସି କଷ୍ଟ ହେଲା ନାହିଁ । ଅଧିକାଂଶ ଶତ୍ରୁ ସୈନ୍ୟ ଚନ୍ଦ୍ରସେନଙ୍କ ପାଖରେ ଆତ୍ମ-ସମର୍ପଣ କଲେ । ଯେଉଁମାନେ ରାକ୍ଷସଙ୍କ ହାବୁଡ଼ରେ ପଡ଼ିଲେ, ସେମାନେ ଅବଶ୍ୟ ମଲେ ।

ଦୁର୍ଗ ତ ଅଧିକାରକୁ ଆସିଗଲା, କିନ୍ତୁ ମହାରାଜା ବୀରସିଂହ କାହାନ୍ତି ? କାନ୍ତିମତୀଙ୍କ ଦୃଢ଼ ବିଶ୍ୱାସ, ତାଙ୍କୁ ଦୁର୍ଗ ବାହାରକୁ ନିଆଯାଇ ନାହିଁ । ସବୁ ସୈନିକ ତାଙ୍କୁ ଖୋଜି ବାହାର କରିବାକୁ ବ୍ୟଗ୍ର । କାରଣ ଯିଏ ତାଙ୍କୁ ପ୍ରଥମେ ଆବିଷ୍କାର କରିବ, ସିଏ ଯେ ଚନ୍ଦ୍ରସେନ ଓ କାନ୍ତିମତୀଙ୍କ ଶୁଭ ଦୃଷ୍ଟିକୁ ଆସିବ, ଏଥିରେ କାହାରି ସନ୍ଦେହ ନଥିଲା ।




କିନ୍ତୁ ଦୁର୍ଗ ଭିତରେ କେଉଁଠି ହେଲେ ବୀରସିଂହଙ୍କୁ ଦେଖିବାକୁ ମିଳିଲା ନାହିଁ । ରାଜକୁମାରୀ କାନ୍ତିମତୀ ଦୁର୍ଗ ଭିତରେ କେଉଁଠି ଗୋପନ ପଥରେ ଯାଇ ଭୂଗର୍ଭ ଗୃହରେ ପହଞ୍ଚିବାକୁ ହେବ, ସେକଥା ଜାଣିଥିଲେ । ସେ ସୈନ୍ୟମାନଙ୍କୁ ସେ ମାର୍ଗ ବତାଇ ଦେଲେ । ସୈନ୍ୟମାନେ ଭୂଗର୍ଭ ଗୃହରେ ପ୍ରବେଶ କଲେ ।

ହଠାତ୍ ଗୋଟିଏ ଅନ୍ଧାରୁଆ କୋଠରୀ ଭିତରୁ ସେମାନେ କାହାର ମୃଦୁ କଣ୍ଠସ୍ୱର ଶୁଣିଲେ । କେହି ଯେପରି ଚିତ୍କାର କରିବାକୁ ଚେଷ୍ଟା କରୁଥିଲା, ଅଥଚ ଚିତ୍କାର କରି ପାରୁ ନଥିଲା !

ସୈନ୍ୟମାନେ ମଶାଲ୍ ଧରି ଝରକା ଦେଇ ସେହି ଅନ୍ଧାରୁଆ ଗୁମ୍ଫା ଭିତରକୁ ଅନାଇଲେ । ସେମାନେ ସେଠାରେ ଗୋଟିଏ ମଣିଷ ବନ୍ଧା ହୋଇ ରହିଛି ବୋଲି ଧାରଣା କରିପାରିଲେ ।

"ଏହି ବ୍ୟକ୍ତି ନିଶ୍ଚୟ ମହାରାଜା ବୀରସିଂହ ହୋଇଥିବେ !" ସେମାନେ ଚିତ୍କାର କରି ପରସ୍ପରକୁ କହିଲେ ।

ସେମାନଙ୍କ ଚିତ୍କାର କାନ୍ତିମତୀ ଓ ଚନ୍ଦ୍ରସେନଙ୍କ କାନରେ ପଡ଼ିଲା । ସେମାନେ ଦୌଡ଼ି ଆସିଲେ । ବାସ୍ତବିକ ରାଜା ବୀରସିଂହ ବିନା ଆଉ କାହାକୁ ନାଗବର୍ମା ଏଠାରେ ବନ୍ଦୀ କରି ଲୁଚାଇ ରଖିବ ?

"ଏ କାରାକକ୍ଷର ଦ୍ୱାର କୌଣସି ମତେ ଭାଙ୍ଗିବାକୁ ପଡ଼ିବ !" ଚନ୍ଦ୍ରସେନ କହିଲେ ।

"ମହାରାଜ ! ଏହା ଭାଙ୍ଗିବା କାଠିକର ପାଠ । ବରଂ ତାଲା ଖୋଲିଯାଉ !" କୌଣସି ଜଣେ ସୈନିକ ଏ ପ୍ରସ୍ତାବ ଦେଲା ।

"ତମେ ବଡ଼ ବୁଦ୍ଧିମାନ ବ୍ୟକ୍ତି ଦେଖୁଛି ! ଏ ତାଲାର ଚାବି ପାଇବାକୁ ହେଲେ ଆମକୁ ଯାଇ ନାଗବର୍ମା ସହ ଯୁଦ୍ଧ କରିବାକୁ ହେବ !" ଚନ୍ଦ୍ରସେନ ବିଦ୍ରୂପ କରି କହିଲେ । ସୈନ୍ୟମାନେ ସଙ୍ଗେ ସଙ୍ଗେ ସେ ଦରଜା ଭାଙ୍ଗିବାର ଉଦ୍ୟମ ଆରମ୍ଭ କରିଦେଲେ । କିନ୍ତୁ ଅଳ୍ପ ସମୟ ଭିତରେ ଜଣା ପଡ଼ିଗଲା ଯେ ତାହା ସମ୍ଭବ ନୁହେଁ ।

ଏତିକିବେଳେ ରାକ୍ଷସ ଉଗ୍ରାକ୍ଷ ଆସି ସେଠାରେ ପହଞ୍ଚିଗଲା । ସେ ତା'ର ସମସ୍ତ ବଳ ପ୍ରୟୋଗ କରି ସେ ଲୁହା ଦରଜା ଖୋଲିବାକୁ ପ୍ରୟାସ କଲା । ଗୃହୁଁ ଗୃହୁଁ ଲୁହା ଦଣ୍ଡମାନ ତା' ହାତମୁଠା ଭିତରେ ବଙ୍କା ହୋଇଗଲେ । ଆଠ ଦଶଥର ଝିଙ୍କି ସେ ସେହି ଶକ୍ତ ଦ୍ୱାରକୁ ମୁକୁଳାଇ ଦେଲା ।

ଆଗ୍ରହ ଓ ଉତ୍କଣ୍ଠା ଭରେ ରାଜକୁମାରୀ କାନ୍ତିମତି ଓ ଚନ୍ଦ୍ରସେନ ଭିତରକୁ ଯାଇ ବନ୍ଦୀକୁ ମୁକ୍ତ କରି ବାହାରକୁ ଆଣିଲେ । ବାସ୍ତବିକ ସେ ବୀରସିଂହ ।

ବୀରସିଂହ ପ୍ରଥମେ କିଛି ବୁଝି ନପାରି ବଲବଲ ଅନାଇଲେ । ତାଙ୍କ ଦୁର୍ଦ୍ଦଶା ଦେଖି ସମସ୍ତେ ବ୍ୟଥିତ ହେଲେ । କାନ୍ତିମତି କାନ୍ଦିଲେ ।

ଯେତେବେଳେ ବୀରସିଂହ ବୁଝିଲେ କି ତାଙ୍କୁ ତାଙ୍କ ସମର୍ଥକମାନେ ମୁକ୍ତ କରିଛନ୍ତି, ସେତେବେଳେ ତାଙ୍କ ମୁହଁରେ ହସ ଫୁଟିଲା । ସେ ଚନ୍ଦ୍ରସେନଙ୍କୁ ଅନାଇ କାନ୍ତିମତିଙ୍କୁ ପଚାରିଲେ, "ଝିଅ, ଇଏ କିଏ ?"

ଚନ୍ଦ୍ରସେନ ଆଗକୁ ଆସି କହିଲେ "ମହାରାଜ ! ମୋର ନାମ ଚନ୍ଦ୍ରସେନ । ଆପଣ ହୁଏତ ମୋ ବିଷୟରେ ଶୁଣିଛନ୍ତି ।"

ବୀରସିଂହ ମୁଣ୍ଡ ହଲାଇ ସଙ୍କେତ ଦେଲେ ଯେ ସେ ଶୁଣିଛନ୍ତି । ତା'ପରେ ସେ ପଚାରିଲେ, "କିନ୍ତୁ ନାଗବର୍ମା ମରିଛି ତ ? ନା ବନ୍ଦୀ ହୋଇଛି ? ତାକୁ ପରାସ୍ତ ନ କରି ତମେମାନେ ତ କେବେ ମୋତେ ଉଦ୍ଧାର କରିପାରି ନଥାନ୍ତ ।"

"ମହାରାଜ ! ନାଗବର୍ମା ମୋ ପିତାଙ୍କ ରାଜ୍ୟ ଧବଳଗିରି ଆକ୍ରମଣ କରିବାକୁ ଯିବାର ସମ୍ବାଦ ପାଇ ମୁଁ ମୋ ସୈନ୍ୟଦଳ ଓ ସେନାପତିଙ୍କୁ ସେଠାକୁ ପଠାଇଛି । ମୋ ସେନାପତି ତାକୁ ପରାସ୍ତ କରିବେ; ପାରିଲେ ବନ୍ଦୀ କରିବେ । ମୁଁ ଏହି ଆଶା କରୁଛି ।" ଚନ୍ଦ୍ରସେନ ଜଣାଇଲେ ।






# ଅଦ୍ଭୁତ ବୈଦ୍ୟ

ନିଶା ଗରଜୁଥାଏ । ଝୁହାଲୁ ଝୁହା ଶୀତଳ ପବନ ସାଙ୍ଗକୁ ମଧେ ମଧେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୂର୍ତ୍ତିମାନ ।

କିନ୍ତୁ ରାଜା ବିକ୍ରମାର୍କ ତିଳେ ମଧ୍ୟ ବିଚଳିତ ବୋଧ ନକରି ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଓତାରି ଆଣିଲେ । ତା'ପରେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ ତାଙ୍କୁ କହିଲା, "ରାଜା ! ଏ ଦୁର୍ଯୋଗପୂର୍ଣ୍ଣ ରାତିରେ ତୁମେ ଯେଭଳି କାମ ହାତକୁ ନେଇଛ, ତାହା ବାସ୍ତବିକ ପ୍ରଶଂସନୀୟ । କିନ୍ତୁ କାର୍ଯ୍ୟ ସିଦ୍ଧି ପରେ

## ବେତାଳ କଥା




ସେଥିରୁ ତମେ ଯେଉଁ ଲାଭ ପାଇବା କଥା, ନିଜ ଭୁଲରୁ ସେ ଲାଭରୁ ବଞ୍ଚିତ ହେବ ନାହିଁ ତ? ଦୁନିଆରେ ସେଭଳି ବୋକାମି କଲାଭଳି ଲୋକ ଯେ ଅଛନ୍ତି, ତାହାର ଦୃଷ୍ଟାନ୍ତ ଦେଉଛି। ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲାଘବ ମନେ ହେବ।"

ବେତାଳ କହିଲା: ଚନ୍ଦ୍ରପୁର ରାଜ୍ୟ ଉପରେ ରାଜତ୍ୱ କରୁଥିଲେ ରାଜା ଚନ୍ଦ୍ରସିଂହ। ତାଙ୍କର ଗୋଟିଏ ବୋଲି ସନ୍ତାନ। ନାମ ମଧୁମତି। ରାଜକନ୍ୟା ଯେତେବେଳେ ଯୌବନରେ ପଦାର୍ପଣ କଲେ, ସେତେବେଳେ ସେ ଗୋଟିଏ ବ୍ୟାଧିର ଶୀକାର ହେଲେ। ପ୍ରଥମେ ତାହା ସାଧାରଣ ଅସୁସ୍ଥତା ବୋଲି ଧରି ନିଆଗଲା ଓ ସେହି ଅନୁସାରେ ଚିକିତ୍ସା ହେଲା। କିନ୍ତୁ ଦିନକୁ ଦିନ ବ୍ୟାଧିର ପ୍ରକୋପ ବହୁତ ବଢ଼ିଲା। ରାଜଦରବାରରେ ଥିବା ବୈଦ୍ୟମାନେ ଯେତେ ଚେଷ୍ଟା କଲେ ବି ରାଜକୁମାରୀଙ୍କୁ ଆରୋଗ୍ୟ କରିପାରିଲେ ନାହିଁ। ରାଜ୍ୟର ଭିନ୍ନ ଭିନ୍ନ ପ୍ରାନ୍ତରୁ ବୈଦ୍ୟମାନେ ଡକାହୋଇ ଆସିଲେ। ସେମାନେ ମଧ୍ୟ କିଛି କରିପାରିଲେ ନାହିଁ।

ରାଜା ଅଗତ୍ୟା ଘୋଷଣା କଲେ କି ଜାତିଧର୍ମ ନିର୍ବିଶେଷରେ ଯିଏ ରାଜକନ୍ୟାଙ୍କୁ ଭଲ କରିଦେବ, ସିଏ ରାଜକନ୍ୟାଙ୍କୁ ବିଭା ହେବ। ଅର୍ଥାତ୍ ରାଜଗାଦିର ଉତ୍ତରାଧିକାରୀ ହେବ।

ଏହା ପରେ ଅନେକ ଆଶାୟୀ ବ୍ୟକ୍ତି ଆସି ରାଜକନ୍ୟାଙ୍କ ଚିକିତ୍ସା କଲେ। ସେଥିରେ ରାଜକନ୍ୟାଙ୍କ ଅବସ୍ଥା ଆହୁରି ଖରାପ ହେଲା।

ସେତିକିବେଳେ ତାଙ୍କୁ ଖବର ମିଳିଲା କି ରାଜ୍ୟର ଗୋଟିଏ ସୀମାନ୍ତ ଗ୍ରାମରେ ଜୀବନଶର୍ମା ନାମକ ଜଣେ ଯୁବକବୈଦ୍ୟ ଅନେକ ପ୍ରାଚୀନ ପୋଥିପତ୍ର ପଢ଼ି ଚିକିତ୍ସାଜ୍ଞାନ ଅର୍ଜନ କରିଛନ୍ତି। ତତ୍‌କ୍ଷଣାତ୍ ମନ୍ତ୍ରୀ ଯାଇ ରାଜକନ୍ୟାଙ୍କ ଅବସ୍ଥା କଥା କହି ତାଙ୍କୁ ରାଜଧାନୀକୁ ନେଇ ଆସିଲେ। ଜୀବନଶର୍ମା ରାଜକନ୍ୟାଙ୍କୁ ବିଶେଷ ଭାବରେ ପରୀକ୍ଷା କରିସାରି ରାଜାଙ୍କୁ କହିଲେ, "ମହାରାଜ! ଏ ରୋଗ କୌଣସି ସାଧାରଣ ଔଷଧ ଦ୍ୱାରା ଭଲ ହେବନାହିଁ। ଏହି ଧରଣର ରୋଗ ସବୁ ମାତ୍ର ଗୋଟିଏ ଚେରର ଦ୍ୱାରା ଭଲ ହୋଇପାରେ।

ତାହା ହିମାଳୟର ଗୋଟିଏ ଅଞ୍ଚଳରେ ମିଳେ । ସେ ଚେର ଶୁଖିଗଲେ କାମ ଦିଏ ନାହିଁ ବୋଲି ଆମେ ତାକୁ ପାଖରେ ରଖୁନା । ମୁଁ ପନ୍ଦରଦିନ ଭିତରେ ଔଷଧ ନେଇ ଆସିପାରେଁ ।"

ରାଜା ବହୁତ ଖୁସି ହେଲେ । ଜୀବନଶର୍ମା ହିମାଳୟ ଗଲେ ।

ଠିକ୍ ପନ୍ଦରଦିନ ପରେ ସେ ଚନ୍ଦ୍ରପୁର ଲେଉଟି ଆସିଲେ । ସେ ଶୁଣିଲେ ପ୍ରାସାଦ ସଂଲଗ୍ନ ଉଦ୍ୟାନ ଭିତରେ କୋଳାହଳ । ଜୀବନଶର୍ମା ଦୌଡ଼ିଗଲେ । ସେ ଦେଖିଲେ, ଉଦ୍ୟାନର ପ୍ରଧାନ ମାଳୀକୁ ସାପ କାମୁଡ଼ି ଦେଇଛି । ସେ ପ୍ରାୟ ମୃତ ।

ଜୀବନଶର୍ମା ତାକୁ ପରୀକ୍ଷା କରି ଦେଖିଲେ, ସେ ଆଣିଥିବା ଚେରହିଁ ଏକମାତ୍ର ଔଷଧ ଯାହା ଦ୍ୱାରା ମାଳୀ ଭଲ ହୋଇ ପାରିବ । ବିଳମ୍ବ କଲେ ଚଳିବ ନାହିଁ । ସେ ତତ୍କ୍ଷଣାତ୍ ସେ ଶିକଡ଼ ଚୂର୍ଣ୍ଣ କରି ପାଣିରେ ଗୋଳାଇ ତାକୁ ପିଆଇଲେ । ଅଳ୍ପ ସମୟ ଭିତରେ ମାଳୀ ଉଠି ବସିଲା ।

ରାଜା ଯେତେବେଳେ ଖବର ପାଇଲେ କି ଜୀବନଶର୍ମା ହିମାଳୟରୁ ଫେରି ଆସିଲେଣି, ସେତେବେଳେ ସେ ଆନନ୍ଦରେ ତାଙ୍କୁ ପାଛୋଟି ନେବା ପାଇଁ ଦୌଡ଼ି ଆସିଲେ । ମୃତପ୍ରାୟ ମାଳୀକୁ ସେ ବଞ୍ଚାଇଥିବାର ଖବର ପାଇ ସେ ଆହୁରି ଆନନ୍ଦିତ ହେଲେ । କିନ୍ତୁ ଯେତେବେଳେ ସେ ଜାଣିଲେ କି ରାଜକନ୍ୟାଙ୍କ ନିମନ୍ତେ ଆଣିଥିବା ଔଷଧ ବୈଦ୍ୟ ମାଳୀ ପାଇଁ ଶେଷ କରି ଦେଇଛନ୍ତି, ସେତେବେଳେ ସେ





କ୍ରୋଧୋନ୍ମତ୍ତ ହୋଇ କହିଲେ । "ତମେ ବିଶ୍ୱାସଘାତକ । ତମେ ମୋ କନ୍ୟାର ଜୀବନ ଅପେକ୍ଷା ସାମାନ୍ୟ ବୁଢ଼ା ମାଳିର ଜୀବନକୁ ଅଧିକ ମୂଲ୍ୟ ଦେଲ !" ଏହା କହି ରାଜା ତାଙ୍କୁ ପ୍ରାଣଦଣ୍ଡ ଦେବାର ହୁକୁମ ଦେଲେ ।

"ମହାରାଜ ! ରାଜକନ୍ୟାଙ୍କ ରୋଗର ଅବସ୍ଥା ପନ୍ଦର ଦିନରେ ବଦଳିବ ନାହିଁ । ମୁଁ ପନ୍ଦର ଦିନରେ ପୁଣି ଔଷଧ ନେଇ ଆସିବି ।" ଜୀବନଶର୍ମା କହିଲେ । କିନ୍ତୁ ରାଜା ସେକଥା ପ୍ରତି କର୍ଣ୍ଣପାତ କଲେ ନାହିଁ ।

ସେଦିନ ଜୀବନଶର୍ମା କାରାଗାରରେ ରହିଲେ । ପରଦିନ ପ୍ରଭାତ କାଳରେ ତାଙ୍କୁ ଫାଶି ଦେବା କଥା । ତାଙ୍କୁ ଫାଶି ମଞ୍ଚକୁ ନିଆଗଲା ।

ମାଳି ଆସି ରାଜାଙ୍କ ପାଦ ଧରି ପଡ଼ିଯାଇ କହିଲା, "ମହିମା ! ପ୍ରକୃତ ଦୋଷୀ ମୁଁ । ମୋତେ ବଞ୍ଚାଇବା ନିମନ୍ତେହିଁ ବୈଦ୍ୟ ସେ ଦୁର୍ମୂଲ୍ୟ ଔଷଧ ଶେଷ କରିଦେଲେ । ମୁଁ ଜଣେ ସାଧାରଣ ମଣିଷ । ମୋର ବଞ୍ଚିବାର କୌଣସି ଆବଶ୍ୟକତା ନଥିଲା । ବର୍ତ୍ତମାନ ବୈଦ୍ୟଙ୍କର ମହାନ୍ ଜୀବନ ରକ୍ଷା କରି ତାଙ୍କ ବଦଳରେ ମୋତେ ପ୍ରାଣଦଣ୍ଡ ଦିଅନ୍ତୁ ।"

ମାଳିର ଏ ପ୍ରସ୍ତାବ ଶୁଣି ପକାଇ ବୈଦ୍ୟ ଫାଶିମଞ୍ଚରୁ କହିଲେ, "କଦାପି ନୁହେଁ । ମୁଁ ଗତ କାଲି ତମକୁ ବଞ୍ଚାଇଥିଲି କ'ଣ ଆଜି ତମେ ମୋ ବଦଳରେ ପ୍ରାଣ ଦେବ ବୋଲି ? ଯଦି ରାଜା ତାଙ୍କ କନ୍ୟାର ଜୀବନ ରହୁ ବୋଲି ପ୍ରକୃତରେ ଚାହାନ୍ତି, ତେବେ ମୋତେ ପୁଣି ଥରେ ଔଷଧ ନେଇ ଆସିବା ନିମନ୍ତେ ସୁଯୋଗ ଦିଅନ୍ତୁ । ମୁଁ ପନ୍ଦରଦିନ ଭିତରେ ପ୍ରତ୍ୟାବର୍ତ୍ତନ କରିବି । ଯଦି ରାଜା ଏଥିରେ ସମ୍ମତ ନ ହୁଅନ୍ତି, ତେବେ ସେ ଯାହା କରିବାକୁ ସ୍ଥିର କରିଛନ୍ତି, ତାହାହିଁ କରନ୍ତୁ ।"

ସୁଯୋଗ ପାଇ ମନ୍ତ୍ରୀ କହିଲେ, "ମହାରାଜ ! ଏ ଯୁବକକୁ ପ୍ରାଣଦଣ୍ଡ ଦେଇ ଆମର କୌଣସି ଲାଭ ହେବ ନାହିଁ । ବରଂ ସେ ଯଦି ତା' କଥା ଅନୁସାରେ କାମ କରିପାରେ, ତେବେ ରାଜକନ୍ୟାଙ୍କ ପ୍ରାଣ ରକ୍ଷା ହେବ ।"

ରାଜା ଏଥିରେ ରାଜି ହେଲେ । ଜୀବନଶର୍ମା ହିମାଳୟ ପ୍ରସ୍ଥାନ କଲେ ଓ ପନ୍ଦରଦିନ

ପରେ ଔଷଧ ଧରି ଫେରିଲେ । ରାଜକନ୍ୟାଙ୍କ ଚିକିତ୍ସା ଆରମ୍ଭ ହେଲା । ଦ୍ୱିତୀୟ ଦିନ ତାଙ୍କ ଅବସ୍ଥାରେ ବିଶେଷ ଉନ୍ନତି ଦେଖାଦେଲା । ସାତଦିନ ଭିତରେ ସେ ଚାଲବୁଲ ଆରମ୍ଭ କଲେ । ବୈଦ୍ୟ ତାଙ୍କ ଖାଦ୍ୟ ପେୟ କଥା ବୁଝୁଥାନ୍ତି । ତାଙ୍କ ରୋଗ ପୂରା ଦୂର ହୋଇଯିବା ପରେ ତାଙ୍କ ସ୍ୱାସ୍ଥ୍ୟର ଯେପରି ଉନ୍ନତି ହେବ, ସେଥିପାଇଁ ସେ କେତେକ ଔଷଧ ସେହିଁଠି ପ୍ରସ୍ତୁତ କଲେ ।

ରାଜକନ୍ୟାଙ୍କ ସ୍ୱାସ୍ଥ୍ୟରେ ଉନ୍ନତି ଦେଖାଦେବା ମାତ୍ରେ ବୈଦ୍ୟଙ୍କୁ ରାଜକୀୟ ସମ୍ମାନ ମିଳିବାକୁ ଲାଗିଲା । ତାଙ୍କ ସୁବିଧା ଅସୁବିଧା କଥା ସ୍ୱୟଂ ରାଣୀ ଓ ମନ୍ତ୍ରୀ ବୁଝୁଥାନ୍ତି । କାରଣ ସେ ରାଜାଙ୍କ ଘୋଷଣା ଅନୁସାରେ ରାଜକନ୍ୟାଙ୍କୁ ବିଭା ହେବା କଥା ।

ରାଜା ଜ୍ୟୋତିଷଙ୍କୁ ଡାକି ବିବାହର ତିଥି ସ୍ଥିର କରିବାକୁ ବସିଲେ । ସେ ବୈଦ୍ୟଙ୍କୁ ଡାକି ଆଣିବାକୁ ମନ୍ତ୍ରୀଙ୍କୁ ପଠାଇଲେ । ମନ୍ତ୍ରୀ ସବାରି ଓ ବାଦ୍ୟକାରମାନଙ୍କୁ ଧରି ଅତିଥି-ଭବନରେ ପହଞ୍ଚିଲେ । ଦେଖିବା ବେଳକୁ ବୈଦ୍ୟ ନାହାନ୍ତି । ରାତିରୁ ସେ ଲୁଆଡ଼େ ଚାଲିଗଲେଣି । ସେ ଅନ୍ୟ ରାଜ୍ୟକୁ ଯାଉଛନ୍ତି ବୋଲି ଅତିଥିଭବନର ପରିଚାଳକ ତାଙ୍କ କଥାରୁ ବୁଝିଥିବାର କହିଲେ ।

ବେତାଳ କାହାଣୀଟି ଏହିଠାରେ ବନ୍ଦ ରଖି ରାଜା ବିକ୍ରମାର୍କଙ୍କୁ ପ୍ରଶ୍ନ କଲା, "ରାଜା!



ଜୀବନଶର୍ମାଙ୍କ ଆଚରଣ ଅତ୍ୟନ୍ତ ଅଖାଡୁଆ ନୁହେଁ କି? ରାଜକନ୍ୟାଙ୍କ ସକାଶେ ଆଣିଥିବା ଔଷଧ ମାଲ ପାଇଁ ଖର୍ଚ୍ଚ କରିଦେବା ହେଲା ତାଙ୍କର ପ୍ରଥମ ବୋକାମି । ଦ୍ୱିତୀୟ ଓ ସବୁଠୁଁ ବଡ଼ ବୋକାମି ହେଲା ରାଜକନ୍ୟାଙ୍କୁ ବିବାହ ନ କରି ପଳାଇଯିବା । ସେ ଯଥା ସମୟରେ ରାଜ୍ୟ ବି ପାଇଥାନ୍ତେ! ତୃତୀୟ ବୋକାମି ହେଲା ଚନ୍ଦ୍ରପୁର ରାଜ୍ୟ ଛାଡ଼ି ଅନ୍ୟ ରାଜ୍ୟକୁ ଯିବା । ଚନ୍ଦ୍ରପୁରରେ ସେ ତ ଚିରଦିନ ରାଜକନ୍ୟାଙ୍କ ଜୀବନଦାତା ଭାବରେ ସମ୍ମାନ ପାଇଥାନ୍ତେ! ସେ ଏଭଳି ତିନି ବୋକାମିର ପରିଚୟ କିପରି ଦେଲେ? ରାଜା! ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର

ଶକ୍ତି ଥିବା ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।”

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, “ଜୀବନଶର୍ମା ବିବେକୀ ଓ ବୁଦ୍ଧିମାନର କାର୍ଯ୍ୟ କରିଛନ୍ତି । ଜଣେ ବୈଦ୍ୟର ଧର୍ମ ହେଲା ରୋଗୀକୁ ଯେ କୌଣସି ମତେ ଭଲ କରିବା । ରୋଗୀ ବୁଢ଼ା କି ବାଳକ, ଗରିବ କି ଧନୀ, ସେ ବିଚାର ସେ ଚିକିତ୍ସା ବେଳେ କରେ ନାହିଁ । ଜୀବନଶର୍ମା ସେହି ଧର୍ମ ଅନୁସାରେ କାମ କରିଥିଲେ । ସେ ଜାଣିଥିଲେ କି ମାଳି ଉପରେ ତତ୍‌କ୍ଷଣାତ୍ ଔଷଧ ପ୍ରୟୋଗ ନକଲେ ସେ ଭଲ ହେବ ନାହିଁ; କିନ୍ତୁ ରାଜକୁମାରୀଙ୍କୁ ପନ୍ଦରଦିନ ପରେ ଔଷଧ ଦେଲେ ଚଳିବ ।

ବୈଦ୍ୟ ଜୀବନଶର୍ମାଙ୍କ ପାଇଁ ତାଙ୍କ ଜ୍ଞାନ ଥିଲା ସବୁଠାରୁ ବଡ଼ ଆକର୍ଷଣ । ନୀରବରେ ସେ ଚିକିତ୍ସା ଶାସ୍ତ୍ର ଅଧ୍ୟୟନ କରୁଥିଲେ । ରାଜ୍ୟଭୋଗ ପାଇଁ ବା ଘଟଣାପ୍ରବାହର ସୁଯୋଗ ନେଇ ରାଜକନ୍ୟାଙ୍କୁ ବିବାହ କରିବା ତାଙ୍କର ଉଦ୍ଦେଶ୍ୟ ନଥିଲା । ତେଣୁ ସେ ସୁଯୋଗ ସେ ଏଡ଼ାଇ ଗଲେ ।

ସେ ଅନ୍ୟ ରାଜ୍ୟକୁ ଚାଲିଯିବାଟା ଚନ୍ଦ୍ରପୁର ରାଜାଙ୍କ ବ୍ୟବହାର ବିରୁଦ୍ଧରେ ଗୋଟିଏ ନୀରବ ପ୍ରତିବାଦ । ଚନ୍ଦ୍ରପୁର ରାଜା ଅବିବେକୀ ଭାବରେ ତାଙ୍କ ଜୀବନ ନେବାକୁ ବସିଥିଲେ । ସେ ରାଜା ପୁଣି ଅପମାନ ବୋଧ କଲେ ପୁଣି ଅବିବେକୀ ଭାବରେ କାମ କରି ପାରନ୍ତି । ଅନ୍ୟ ରାଜ୍ୟ ତାଙ୍କ ପାଇଁ ନିରାପଦ ହେବ ବୋଲି ସେ ବୁଝିଥିଲେ । ନିଜ ବିଦ୍ୟାବଳରେ ସେ ଯେ କୌଣସି ସ୍ଥାନରେ ଅଚିରେ ସମ୍ମାନ ଓ ସମ୍ବଳ ପାଇବେ, ସେ ବିଶ୍ୱାସ ତାଙ୍କର ଥିଲା ।”

ରାଜାଙ୍କ ଉତ୍ତର ପାଇବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନର୍ବାର ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)






# ଟିକି ମେଘ

ତ୍ରିଗର୍ତ୍ତ ରାଜ୍ୟର ସବୁ ଲୋକେ କୃଷକ । ସେମାନେ ଉତ୍ତମ ଫସଲ ନିମନ୍ତେ ବର୍ଷା ଉପରେ ନିର୍ଭର କରିଥାନ୍ତି ।

ଥରେ କେତେଜଣ ବିଦେଶୀ ସେ ରାଜ୍ୟ ଭିତର ଦେଇ ଯାଉଥିଲେ । ସେତେବେଳେ ଆକାଶରେ ମେଘ ଭରି ରହିଥାଏ । ଜଣେ ବିଦେଶୀ ତା' ସାଥୀମାନଙ୍କୁ କହିଲା, "ଆରେ ଭାଇ, ଆମ ରାଜ୍ୟରେ ଯେମିତି ମେଘ ଆସିଲେ ଆମେମାନେ ମେଘମାଳା ଉଦ୍ଦେଶ୍ୟରେ ନମସ୍କାର କରୁଁ, ଏ ଦେଶରେ ତ କାହିଁ ସେମିତି କିଛି ଦେଖୁନାହିଁ ! ଲୋକେ ମେଘମାନଙ୍କୁ ସମ୍ମାନ ଜଣାଉ ନାହାନ୍ତି !"

ମେଘମାନେ ଏକଥା ଶୁଣିଦେଲେ । ସେମାନଙ୍କ ସର୍ଦ୍ଦାର କହିଲା, "ଚାଲ, ଚାଲ, ବେଗି ବେଗି ଆମେ ଏ ରାଜ୍ୟର ଆକାଶରୁ ହଟିଯିବା ।"

ମେଘମାନେ ସେ ରାଜ୍ୟର ଆକାଶରୁ ଉଡ଼ିଗଲେ । ସେ ରାଜ୍ୟ ସୀମା ବାହାରକୁ ଯାଇ ମେଘ ସର୍ଦ୍ଦାର ମେଘମାନଙ୍କୁ କହିଲା, "ଖବରଦାର୍ ! କଦାପି କେହି ତ୍ରିଗର୍ତ୍ତ ରାଜ୍ୟ ଉପରେ ବର୍ଷା କରିବ ନାହିଁ । ସେଠାକାର ଲୋକେ ଆମକୁ ସମ୍ମାନ ଦିଅନ୍ତି ନାହିଁ । ସେମାନେ ହଇରାଣ ହୁଅନ୍ତୁ ।" ବାସ୍ ! ମେଘମାନେ ତେଣିକି ଆଉ ତ୍ରିଗର୍ତ୍ତ ଉପରକୁ ଗଲେ ନାହିଁ ।

କୃଷକମାନେ ବର୍ଷା ପାଇଁ ଅପେକ୍ଷା କରି ହତାଶ ହେଲେ । ସେ ବର୍ଷ ସେମାନେ କୌଣସି ମତେ ଚଳିଗଲେ । କିନ୍ତୁ ପର ବର୍ଷ ବି ଯେତେବେଳେ ବର୍ଷା କାଳରେ ମେଘର ଦେଖା ମିଳିଲା ନାହିଁ, ସେତେବେଳେ ସେମାନଙ୍କ ଭିତରେ ଘାଲେଣି ପଡ଼ିଲା ।

ହଠାତ୍ ଦିନେ ଖଣ୍ଡେ ଛୋଟିଆ ମେଘ ତ୍ରିଗର୍ତ୍ତ ଆକାଶକୁ ପଶି ଆସିଲା ଓ କିଛି ସମୟ

ପଚିଶବର୍ଷ ତଳର 'ଚନ୍ଦାମାମା'ରୁ ଗୃହୀତ

ପାଇଁ ବର୍ଷା ଜଳ ପୁଣି ଉଡ଼ ଚାଲିଗଲା । ଲୋକେ ଖୁସି ହୋଇ ଭାବିଲେ ଏଥର ବର୍ଷା ହେବ । ସେମାନେ ବାଜନ ବୁଣିଦେଲେ ।

ତେଣେ ଟିକି ମେଘ ଖଣ୍ଡିକ ଫିଟିଗଲା ବାହାରକୁ ଯିବାମାତ୍ରେ ଅନ୍ୟ ମେଘମାନେ ତାକୁ ଘେରିଯାଇ ପଚାରିଲେ, "ହଇରେ ଟୋକା! ତୋତେ ଏତେ ଦୟା ଦେଖାଇବାକୁ କହିଲା କିଏ ?"

"ଦୟା ଦେଖାଉଥିଲି ଭାବୁଛ ? ସେ ଲୋକଙ୍କୁ ହଇରାଣ କରିବା ତମ ଉଦ୍ଦେଶ୍ୟ ତ ? ମୁଁ ତମମାନଙ୍କ ତୁଳନାରେ ବହୁତ ଅଧିକ ହଇରାଣ କରିପାରିଛି । ବର୍ଷା ହେବ ଭାବି ସେମାନେ ବାଜନତକ ବି ଶେଷ କରିଦେଲେ ।" ଟିକି ମେଘ କହିଲା । "ଥରେ ଯାଅ, ସେମାନେ କିପରି ହାହାକାର କରୁଛନ୍ତି ଦେଖି ଆସ !" ସେ ପୁଣି କହିଲା ।

ମେଘମାନେ ଦଳ ବାନ୍ଧି ଫିଟିଗଲେ ଲୋକଙ୍କ ହାହାକାର ଦେଖିବାକୁ ଆସିଲେ । ଆକାଶରେ ସେ ବ୍ୟାପକ ମେଘମାଳ ଦେଖି ରାଜ୍ୟର ଆବାଳବୃଦ୍ଧବନିତା ବାହାରି ଆସି ମେଘମାଳାଙ୍କୁ ନମସ୍କାର ଓ ସ୍ୱାଗତ ଜଣାଇଲେ । ଆନନ୍ଦରେ ସେମାନେ ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ ।

ଟିକି ମେଘ ମେଘମାଳାର ସର୍ଦ୍ଦାରକୁ କହିଲା, "ଦେଖୁଛ ? ଲୋକେ ଆମକୁ ବହୁତ ସମ୍ମାନ ଦେଖାଇଲେଣି । ଆଉ ସେମାନଙ୍କୁ ହଇରାଣ କରିବା ଦରକାର କ'ଣ ?"

"ଠିକ୍ । କର ବର୍ଷା !" ସର୍ଦ୍ଦାର କହିଲା ।

ସଙ୍ଗେ ସଙ୍ଗେ ମୂଷଳଧାରରେ ବର୍ଷା ହେଲା । ଲୋକଙ୍କ ଆନନ୍ଦ କହିଲେ ନ ସରେ । ତେଣିକି ପ୍ରତିବର୍ଷ ମେଘ ଉଠାଇ ଆସିଲେ ସେମାନେ ମେଘମାଳାକୁ ସ୍ୱାଗତ କରନ୍ତି । ଯଥାବିଧି ବର୍ଷା ହୁଏ ।

ଟିକି ମେଘ ଯେ ଲୋକଙ୍କ ପ୍ରତି ଅନୁରାଗ ଯୋଗୁଁ କୌଶଳରେ ଏତକ କାମ କରାଇ-ନେଲା, ସେକଥା ତା' ନିଜ ଛଡ଼ା ଅନ୍ୟ କେହି ଜାଣିଲେ ନାହିଁ ।






ଭାରତର ମନ୍ଦିର

# ଚିତୋରଗଡ଼

ରାଜସ୍ଥାନରେ ପାଞ୍ଚଶହ ଫୁଟ ଉପରେ ସାତଶହ ଏକର ପରିମିତ ସ୍ଥାନରେ ଅବସ୍ଥିତ ଐତିହାସିକ ଚିତୋର ଦୁର୍ଗ । ସ୍ଥାନଟି ପ୍ରାଚୀନ କାଳରୁ ଗୁରୁତ୍ୱପୂର୍ଣ୍ଣ । ଭୀମ ପ୍ରଥମେ ଏଠି ଗୋଟିଏ ଘର ତୋଳି କିଛି କାଳ ରହିଥିଲେ ।

ଇତିହାସ କହେ, ଚିତ୍ରାଙ୍ଗଦ ନାମକ ମୌର୍ଯ୍ୟ ରାଜା ଏଠାରେ ପ୍ରଥମେ ନିଜ ରାଜଧାନୀ ବନାଇଥିଲେ । ସେତେବେଳେ ଏ ପର୍ବତର ନାମ ଥିଲା ଚିତ୍ରକୁଟ । ପରବର୍ତ୍ତୀ କାଳରେ ଲୋକେ ତାକୁ ଚିତୋର ବୋଲି କହିଲେ । ଚିତ୍ରାଙ୍ଗଦଙ୍କ ଦୁର୍ଗ କାହିଁ କେଉଁକାଳରୁ ବିଲୁପ୍ତ ହେଲାଣି ।





ଇନ୍ଦୋରରୁ ଆସି ଗୁହିଲ ବଂଶର ରାଜାମାନେ ଏଠାରେ ମେବାର ରାଜ୍ୟର ରାଜଧାନୀ ପ୍ରତିଷ୍ଠା କଲେ । ତାହା ଅଷ୍ଟମ ଶତାବ୍ଦୀର କଥା । ତ୍ରୟୋଦଶ ଶତାବ୍ଦୀରେ ଗୁହିଲ ରତନ ସିଂହ ଏଠାରେ ଶାସନ କରୁଥିଲେ । ତାଙ୍କ ସ୍ତ୍ରୀ ରାଣୀ ପଦ୍ମିନୀଙ୍କ ରୂପ ଗୁଣ କଥା ଶୁଣି ସୁଲତାନ୍ ଆଲ୍ଲାଉଦ୍ଦିନ୍ ଖିଲ୍‌ଜୀ ତାଙ୍କୁ ପାଇବା ଆଶାରେ ଚିତୋର ଆକ୍ରମଣ କଲେ ।



କିନ୍ତୁ ଯୁଦ୍ଧରେ କିଛି ନପାଇ ସେ ଗୋଟିଏ ପର୍ବତ ତଳେ ଡେରା ପକାଇ ରହିଲେ ଓ ଥରେ ରାଣୀ ପଦ୍ମିନୀଙ୍କୁ ଦେଖି ଚାଲିଯିବେ ବୋଲି ଖବର ଦେଲେ । ରାଣୀ ପଦ୍ମିନୀଙ୍କ ମୁହଁର ପ୍ରତିଫଳନ ଗୋଟିଏ ଦର୍ପଣରେ ଦେଖିବାର ସୁଯୋଗ ଦିଆଗଲା । ସୁଲତାନ୍‌ଙ୍କୁ ବିଦାୟ ଦେବା ନିମନ୍ତେ ସରଳମତି ରତନସିଂହ ପ୍ରାଚୀର ବାହାରକୁ ଆସିବା ମାତ୍ରେ ସୁଲତାନ୍‌ଙ୍କ ଚରମାନେ ତାଙ୍କୁ ବନ୍ଦୀ କଲେ ।

ସୁଲତାନ୍ ଖବର ପଠାଇଲେ କି ରାଣୀ ପଦ୍ମିନୀଙ୍କୁ ନ ପାଇଲେ ସେ ରତନସିଂହଙ୍କୁ ହତ୍ୟା କରିବେ । ରାଣୀ ଉତ୍ତରରେ କହିଲେ କି ସେ ତାଙ୍କ ସାତଶହ ଦାସୀଙ୍କ ସହ ସୁଲତାନ୍‌ଙ୍କ ଶିବିରକୁ ଆସିବେ । ସୁଲତାନ୍ ବହୁତ ଖୁସି ହେଲେ । ଦୁର୍ଗ ଭିତରୁ ରାଣୀଙ୍କ ପାଲିଙ୍କି ଶୋଭାଯାତ୍ରା ବାହାରିଲା ।





ସୁଲତାନ୍‌ଙ୍କ ଶିବିର ଭିତରେ ପଶିବା ମାତ୍ରେ ସାତଶହ ସବାରୀରୁ ବାହାରି ପଡ଼ିଲେ ଚଉଦଶହ ଦକ୍ଷ ରାଜପୁତ ସୈନ୍ୟ । ପାଲିଙ୍କି-ବାହକମାନେ ବି ଥିଲେ ସୈନ୍ୟ । ମୁହୂର୍ତ୍ତକ ଭିତରେ ସେମାନେ ସୁଲତାନ୍‌ର ଶିବିର ଛାରଖାର କରିଦେଲେ । ବନ୍ଦୀ ରତନସିଂହ ମୁକ୍ତ ହେଲେ । ସୁଲତାନ୍ ନିଜେ କୌଣସି ମତେ ପ୍ରାଣ ଧରି ପଳାଇ ଗଲେ ।

ଅପମାନିତ ଆଲ୍ଲଉଦ୍ଦିନ ଖିଲ୍‌ଜୀ ପରବର୍ଷ ଗୋଟାଏ ବିରାଟ ସୈନ୍ୟବାହିନୀ ଧରି ଚିତୋର ଆକ୍ରମଣ କଲେ । ରାଜପୁତ୍‌ମାନେ ପ୍ରବଳ ଯୁଦ୍ଧ କରି ଜଣ ଜଣ କରି ସମସ୍ତେ ପ୍ରାଣ ଦେଲେ, କିନ୍ତୁ ଜଣେ ବି ଆତ୍ମ-ସମର୍ପଣ କଲେ ନାହିଁ । ରାଣୀ ପଦ୍ମିନୀ ତଥା ଦୁର୍ଗର ସମସ୍ତ ମହିଳା ଅଗ୍ନିକୁଣ୍ଡରେ ଝାସ ଦେଲେ ।





ଏହି ଚିତୋର ଦୁର୍ଗର ଅଧିପତି ଭୋଜରାଜଙ୍କୁ ବିବାହ କରିଥିଲେ ଯୋଧପୁରର ରାଜକନ୍ୟା ମୀରାବାଈ । ଦୁର୍ଗ ଭିତରେ ଏହି ଅସାମାନ୍ୟା କୃଷ୍ଣଭକ୍ତ ଓ କବିଙ୍କ ନିମନ୍ତେ ତାଙ୍କ ସ୍ୱାମୀ ଗୋଟିଏ କୃଷ୍ଣମନ୍ଦିର ନିର୍ମାଣ କରି ଦେଇଥିଲେ । ସବୁ ଦିନ ମୀରାବାଈ ମନ୍ଦିର ଭିତରେ ନିଜ ଭଜନ ଗାନ କରୁଥାନ୍ତି ।

ଏହି ଦୁର୍ଗ ଭିତରେ ଘଟିଥିଲା ଆହୁରି ଗୋଟିଏ ଦୁଃଖଦାୟକ ଘଟଣା । ଧାଈ ପାନ୍ନା ତାଙ୍କ ଦାୟିତ୍ୱରେ ଥିବା ରାଜପୁତ୍ରଙ୍କୁ ଲୁଚାଇ ଆତତାୟୀକୁ ନିଜ ଶିଶୁ ପୁତ୍ରକୁ ଦେଖାଇ ସେ ରାଜପୁତ୍ର ବୋଲି କହିଥିଲେ । ଫଳରେ ସେ ନିଜ ଶିଶୁକୁ ହରାଇଲେ, କିନ୍ତୁ ରଖିଗଲେ କର୍ତ୍ତବ୍ୟ-ନିଷ୍ଠାର ଉଜ୍ଜ୍ୱଳ ଦୃଷ୍ଟାନ୍ତ ।





ଆଜି ଚିତୋରର ଦୁର୍ଗର ଭଗ୍ନାବଶେଷ ମାତ୍ର ରହିଛି । କିନ୍ତୁ କେତୋଟି ଇମାରତ ଅଦ୍ୟାବଧି ଆମକୁ ବିସ୍ମିତ କରେ । ସବୁଠାରୁ ଦର୍ଶନୀୟ ହେଲା 'ବିଜୟ ଗମ୍ବୁଜ' । ଗୁଜରାଟର ସୁଲ୍‌ତାନ୍ ମହମୁଦ୍ଦିନ୍ ଶାହାଙ୍କୁ ପରାସ୍ତ କରିବା ପରେ ଚିତୋରର ମହାରଣା କୁମ୍ଭ ୧୪୪୮ ରେ ଏହାକୁ ନିର୍ମାଣ କରିଥିଲେ ।

ତା'ଛଡା ରହିଛି ମହାରଣା କୁମ୍ଭଙ୍କର ଏକ ଶକ୍ତ କୋଠା । ଦୁର୍ଗ ରକ୍ଷା ନିମନ୍ତେ ସେ ତାହା ନିର୍ମାଣ କରିଥିଲେ । ତହିଁ ଭିତରୁ ବହୁ ଦୂରକୁ ଚାଲିଯିବା ନିମନ୍ତେ ଗୋପନ ପଥ ଓ ସୁଡ଼ଙ୍ଗମାନ ରହିଛି । ଏହି କୋଠାର ନିମ୍ନଭାଗରେ ଥିବା ଗୋଟିଏ ବଡ଼ ଘର ଭିତରେ ରାଣୀ ପଦ୍ମିନୀ ସତୀ ହୋଇଥିଲେ ।





କାଳୀମାତାଙ୍କ ମନ୍ଦିର ବୋଧହୁଏ ଚିତୋରର ସବୁଠାରୁ ପୁରୁଣା ମନ୍ଦିର । କାଳୀମାତା ଏ ଦୁର୍ଗର ଆରାଧ୍ୟାଦେବୀ ଥିଲେ । ଆହୁରି ଅତୀତରେ ଏ ମନ୍ଦିରରେ ସୂର୍ଯ୍ୟଦେବଙ୍କ ଉପାସନା ଚାଲିଥିଲା ବୋଲି ଅନୁମାନ କରାଯାଏ । ଚିତୋର ଦୁର୍ଗ ଅତି ଗରୀୟାନ୍ ସ୍ଥାନ ।



# ବିଷମ ସମସ୍ୟା

"ପୁଅ! ମୁଁ ତୋ ପାଇଁ ବିଶେଷ କିଛି ସଞ୍ଚୟ କରି ରଖି ଯାଉନାହିଁ। ଅଳ୍ପ ଯାହା ଜମିଜମା ଅଛି, ତାହାକୁ ପୁଞ୍ଜି କରି ତୋତେ ଚଳିବାକୁ ହେବ। କିନ୍ତୁ ମୁଁ ଦୀର୍ଘଦିନ ଅସୁସ୍ଥ ରହିବା ଭିତରେ ତୁ ମୋର ଯେପରି ସେବା ଶୁଶ୍ରୂଷା କରିଛୁ, ତାହା ତୋର ମହତ୍ତ୍ୱର ପରିଚୟ ଦିଏ।" ଜଣେ କୃଷକ ମୃତ୍ୟୁଶଯ୍ୟାରେ ତା'ର ଏକମାତ୍ର ପୁଅକୁ ଏକଥା କହିଲା। ଟିକିଏ ରହିଯାଇ ସେ ପୁଣି ପୁଅକୁ କହିଲା, "କିନ୍ତୁ ମୁଁ ତୋତେ ଆଶୀର୍ବାଦ କରୁଛି। ତୁ ମାଟି ଛୁଇଁଲେ ତାହା ସୁନାରେ ପରିଣତ ହେବ।"

ପୁଅ ଆଖି ପୋଛି ଛିଡ଼ା ହୋଇ ରହିଲା। କିଛି ସମୟ ପରେ ପିତାର ମୃତ୍ୟୁ ହେଲା। ଶମ୍ ନାମକ ସେ ଯୁବକ ତାଙ୍କ ସମାଜର ପ୍ରଥା ଅନୁସାରେ ପିତାର ଶ୍ରାଦ୍ଧ କରିସାରି କୃଷି କାର୍ଯ୍ୟରେ ମନଦେଲା। ଅଳ୍ପଦିନ ଭିତରେ ସେ ଗୋଟିଏ ସୁନ୍ଦର ଅଙ୍ଗୁର ବଗିଚା ଗଢ଼ିଲା ଓ ସେଥିରେ ସାଫଲ୍ୟ ପରେ ଅନ୍ୟାନ୍ୟ ପ୍ରକାର କୃଷିବାସ ଓ ବେପାରରେ ମନଦେଲା। ସବୁ ପ୍ରକାର ବ୍ୟବସାୟରେ ତାକୁ ସାଫଲ୍ୟ ମିଳିବାକୁ ଲାଗିଲା।

କ୍ରମେ ସେ ଯେଉଁ କାମରେ ହାତ ଦେଲା, ତାହା ଆଶାତୀତ ଭାବରେ ଉଧାଇଲା। ସେ ହେଲା ସହରରେ ଜଣେ ଧନୀ ଲୋକ। ବଡ଼ କୋଠା ତିଆରି କଲା। ଗୋଟିଏ ସମ୍ଭ୍ରାନ୍ତ ପରିବାରରେ ବିଭା ହେଲା ଓ ସୁଖରେ ରହିଲା।

ଦିନେ ସେ ଜଣେ ଦାର୍ଶନିକଙ୍କଠାରୁ ଶୁଣିଲା, "ଯାହାର ସବୁ କାମରେ ଲାଭ ହୁଏ, ହଠାତ୍ ଦିନେ ତା'ର ସବୁ ଚାଲିଯାଇ ପାରେ!" ଏକଥା ଶୁଣିବା ପରେ ଚିନ୍ତାରେ ତା'ର ରାତିରେ ନିଦ ହେଲା ନାହିଁ। ବାସ୍ତବିକ୍, ସେ

ଗ୍ରୀକ ଦେଶର ଲୋକକଥା



ଯେଉଁ କାମରେ ହାତ ଦେଉଛି, ଯେଉଁ ବେପାର କରୁଛି, ସବୁଥିରେ ତାକୁ ଆଶାତୀତ ଲାଭ ମିଳୁଛି । ହଠାତ୍ ଯଦି ସବୁ ଦିନେ ଚାଲିଯିବ ? ସେ ତା'ର ଏହି ଚିନ୍ତା ଜଣେ ବନ୍ଧୁ ପାଖରେ ପ୍ରକାଶ କଲା ଓ କହିଲା, "ଭାଇ, ମୋ ପରିଶ୍ରମ ତୁଳନାରେ ମୁଁ ବହୁତ ଅଧିକ ଲାଭ ପାଇଲଣି । ଏତେ ସଫଳତା ଭଲ ନୁହେଁ ପରା! କୌଣସି ବେପାରରେ କ୍ଷତି ହେଲେ ଭଲ ହୁଅନ୍ତା !"

"ତୁ ଗୋଟାଏ କାମ କର । କାଇରୋକୁ ଖଜୁରି କୋଳି ଧରି ବିକିବାକୁ ଯା । କହିବା ବାହୁଲ୍ୟ, ପ୍ରଚୁର କ୍ଷତି ହେବ । ତାହା ହେଲା ଖଜୁରିକୋଳିର ରାଜ୍ୟ । ତୋର କ୍ଷତି ହେଲେ ଯେଉଁ ଦୁଷ୍ଟ ଶତ୍ରୁମାନେ ତୋ ପ୍ରତି ଈର୍ଷ୍ୟା କରୁଥିବେ, ସେମାନେ ଖୁସି ହୋଇଯିବେ । ତୋର ଅନିଷ୍ଟ ପାଇଁ ଆଉ ମନ କରିବେ ନାହିଁ ।" ତା' ବନ୍ଧୁ କହିଲା ।

ଏକଥା ଶମ୍ ମନକୁ ବେଶ୍ ପାଇଲା । ସେ ବହୁତ ଖଜୁରି କୋଳି କିଣି କେତୋଟି ଓଟ ପିଠିରେ ଲଦି କାଇରୋ ଅଭିମୁଖେ ଚାଲିଲା ।

ମରୁଭୂମି ଭିତରଦେଇ କିଛିଦିନ ଗତି କରିବା ଉତ୍ତାରୁ ସେ କାଇରୋ ନିକଟରେ ପହଞ୍ଚିଲା । ସେ ନଗରୀ ଭିତରେ ପ୍ରବେଶ କରିବା ପୂର୍ବରୁ ପିରାମିଡ ପାଖରେ ହଠାତ୍ ଦୂରରୁ ସୁଲ୍‌ତାନ୍ ସେଠାକୁ ଆସୁଥିବାର ଦେଖିଲା । ସେ ଓହ୍ଲାଇ ପଡ଼ି ସୁଲ୍‌ତାନ୍‌ଙ୍କୁ ଅଭିବାଦନ ଜଣାଇଲା । ସୁଲତାନ୍ ପଚାରିଲେ, "ତମେ କି ବେପାର କରିବାକୁ ଯାଉଛ ?"

"ହଜୁର୍ ! ମୁଁ କାଇରୋକୁ ଖଜୁରି କୋଳି ବିକିବାକୁ ଯାଉଛି !" ଶମ୍ ଉତ୍ତର ଦେଲା ।

ସୁଲତାନ୍ ପ୍ରଥମେ ବିସ୍ମିତ ହୋଇ ତା' ଆଡକୁ ଅନାଇଲେ ଓ କହିଲେ, "ତମେ ଥଟ୍ଟା କରୁଛ ନା ତମ ମୁଣ୍ଡ ଖରାପ ? କାଇରୋରେ ଖଜୁରି କୋଳିର ଅଭାବ କ'ଣ ଯେ ତମେ ଏତେ ଦୂରରୁ କୋଳି ଧରି ବିକିବାକୁ ଚାଲିଛ ! ପ୍ରଚୁର କ୍ଷତି ତମ ଭାଗ୍ୟରେ ଅଛି ।"

"ହଜୁର୍ ! ଆପଣଙ୍କ କଥା ସତ ହେଉ !" ଶମ୍ କହିଲା ।

"ଏଁ କ'ଣ କହିଲ? ମୋ କଥା ସତ ହେବା ମାନେ ତ ତମର ପ୍ରଚୁର କ୍ଷତି ହେବ। ଧନ ବେଶି ହୋଇଛି ତ ବାଣ୍ଟି ଦିଅ, ଏପରି ମୂର୍ଖାମି କାହିଁକି କରୁଛ?" ସୁଲତାନ୍ ଅବାକ୍ ହୋଇ କହିଲେ।

"ହଜୁର୍, ଏହି କୋଳ ବ୍ୟବସାୟ ପାଇଁ ମୋର ଉଦ୍ଦେଶ୍ୟ ଅଲଗା। ମୁଁ ଯାହା ବ୍ୟବସାୟ କଲି ସେଥିରେ ଲାଭବାନ୍ ହେଲି। ଏବେ ଧନ ତ ଫିଙ୍ଗି ଦେବ ନାହିଁ। ଜଣେ ଦାର୍ଶନିକ କହିଛନ୍ତି, "ଯାହାର ସବୁଥିରେ ଲାଭ ହୁଏ ହଠାତ୍ ଦିନେ ସବୁ ବୁଡ଼ି ଯାଇପାରେ।" ସେହି ଭୟରେ ମୁଁ ଅନ୍ତତଃ କେତେକ ବ୍ୟବସାୟରେ ଇଚ୍ଛା କରି କ୍ଷତି ସହିବ ବୋଲି ମନସ୍ଥ କରିଛି।" ଶମ୍ କହିଲା। ପୁଣି ସେ କହିଲା, "ହଜୁର୍, ମୋ ବାପା କହିଥିଲେ କି ମୋ ହାତରେ ମାଟି ସୁନା ପାଲଟିଯିବ!" ଏହା କହୁଁ କହୁଁ ସେ ମୁଠାଏ ମାଟି ଉଠାଇ ହାତ ଖୋଲି ଦେଲା। ଝର୍ ଝର୍ କରି ବାଲି ସବୁ ପଡ଼ିଗଲା। ହାତରେ ରହିଗଲା ଗୋଟିଏ ହୀରକ ଲଗିଥିବା ସୁବର୍ଣ୍ଣ ଅଙ୍ଗୁରୀୟ।

ସୁଲତାନ୍ କାବା ହୋଇ ଅନାଇ ରହିଲେ। ସେ କହିଲେ, "ବାବୁ! ଏହି ମୁଦିଟି ମାସକ ତଳେ ମୋ ହାତରୁ ଏଠି କେଉଁଠି ଗଳି ପଡ଼ିଥିଲା। ଏହା ଗୋଟିଏ ଶୁଭଙ୍କର ଅଙ୍ଗୁଠି। ଏହାକୁ ଖୋଜିବାକୁ ମୁଁ ସପ୍ତାହରେ ଥରେ ଦୁଇଥର ଆସେଁ। ଏ ବାଲିକା ରାଶି ଭିତରୁ ଦିନେ ଏହା ମିଳିବ, ଏ ଆଶା କେବେ ମୁଁ କରି ନଥିଲି।"

ଏହା କହି ସୁଲତାନ୍ ଶମ୍‌କୁ ନିଜ ପ୍ରାସାଦକୁ ନେଇଗଲେ। ତା' ଖଜୁରିତକ ଚଢ଼ା ମୂଲ୍ୟ ଦେଇ କିଣି ନେଲେ ଓ ତାକୁ ବହୁତ ପୁରସ୍କାର ଦେଲେ।

ଶମ୍ କାଇରୋରେ ବି ଖଜୁରିକୋଳ ବିକି ଲାଭ କରି ନିଜ ସହରକୁ ଫେରିଲା!

"ତୋ ଦେଇ କ୍ଷତି ହେବ ନାହିଁ!" ତା' ବନ୍ଧୁ ତାକୁ ହସି ହସି କହିଲା।



# ଆପତ୍ତି ନାହିଁ !

ଶ୍ୟାମାପୁର ଗାଁର ଧନୀ ଲୋକ ବଳମ୍ବୁବାବୁ ନିଜକୁ ଖୁବ୍ ବୁଦ୍ଧିମାନ ମନେ କରନ୍ତି ଓ ସେ ବୁଦ୍ଧିକୁ ସେ ଟଙ୍କା ସଞ୍ଚୟରେହିଁ ବ୍ୟୟ କରନ୍ତି । ଆଉ କେଉଁଥିରେ ବ୍ୟୟ କରନ୍ତି ନାହିଁ ।

ତାଙ୍କ ପୁଅର ଜନ୍ମଦିନ ଆସୁଥାଏ । ପୁଅ ପାଇଁ ନୂଆ ପୋଷାକ କରିଦେବାକୁ ତାଙ୍କ ସ୍ତ୍ରୀ କହିଲେ । ସେ ଲୁଗା କିଣି ଦରଜୀକୁ ଦେଇ ଆସିଲେ, କିନ୍ତୁ ଦରଜୀକୁ ତା' ମୂଲ ଦେବାକୁ ତାଙ୍କ ମନ କହିଲା ନାହିଁ ।

ପୁଅର ଜନ୍ମଦିନ ପୂର୍ବଦିନ ଦରଜୀ ପାଖକୁ ସେ ନିଜେ ନ ଯାଇ ପୁଅକୁ ଗୋଟାଏ ବୁଦ୍ଧି ଶିଖାଇ ପଠାଇ ଦେଲେ । ସେଦିନ ସନ୍ଧ୍ୟାରେ ଅନ୍ୟତ୍ର ତାଙ୍କର କାମ ଥାଏ । ପୁଅର ଜନ୍ମଦିନ ସକାଳେ ଘରେ ପହଞ୍ଚି ଦେଖନ୍ତି ପୁଅ ପୁରୁଣା ଲୁଗା ପିନ୍ଧି ବୁଲୁଛି ।

"କିରେ, ନୂଆ ଲୁଗା କାହିଁ ?" ସେ ପଚାରିଲେ ।

"ଦରଜୀ ମୂଲ ନ ପାଇବାରୁ ଦେଲା ନାହିଁ ।"

"ତୁ ତାକୁ ଯାହା କହିବାର କହିଥିଲୁଟି ?" ସେ ପୁଣି ପଚାରିଲେ ।

"ହଁ । ମୁଁ କହିଲି କି ମୁଁ ସାନପିଲା ହୋଇଥିବାରୁ କାଳେ ପଇସା ହଜାଇ ଦେବି ତେଣୁ ବାପା ମୋ ହାତରେ ପଠାଇଲେ ନାହିଁ । ଦରଜୀ କହିଲା, ବାପାଙ୍କୁ କହିବୁ ତୁ ବଡ଼ ଯୁବକ ହୋଇ ପଇସାପତ୍ର ପ୍ରତି ସତର୍କ ହେବା ପର୍ଯ୍ୟନ୍ତ ଏ ପୋଷାକ ମୋ ଜିମା ରଖିବାରେ ମୋର ଆପତ୍ତି ନାହିଁ ।" ପୁଅ ଉତ୍ତର ଦେଲା । ବଳମ୍ବୁବାବୁ ପଇସା ପଠାଇ ପୋଷାକ ଆଣିଲେ ।





# ଉତ୍ତର ରାମାୟଣ

ରାବଣ ବରୁଣାଳୟ ଆକ୍ରମଣ କରିବା ପରେ ଲଙ୍କାକୁ ଫେରିଲା । ସେ ପୁଷ୍ପକ ବିମାନରେ ବସି ଯାଉଥାଏ । ଅହଂକାରରେ ତା'ର ମନ ଭରି ଉଠିଥାଏ । ବାଟରେ ବିବାହିତା ବା କୁମାରୀ ଯେ କୌଣସି ସୁନ୍ଦରୀ ସ୍ତ୍ରୀଅଙ୍କୁ ଦେଖୁଥାଏ ବଳପୂର୍ବକ ହରଣ କରି ନେଇ ଆସୁଥାଏ । ସେମାନେ କେବଳ କାନ୍ଦି କାନ୍ଦି ଶାପ ଦେଉଥା'ନ୍ତି । ଲଙ୍କାରେ ପହଞ୍ଚିବା ମାତ୍ରେ ସୂର୍ପଣଖା କାନ୍ଦି କାନ୍ଦି ତାକୁ କହିଲା, "ଭାଇ, ତମେ କାଳକେୟମାନଙ୍କ ସହିତ ଯୁଦ୍ଧ କରୁ କରୁ ମୋର ସ୍ୱାମୀଙ୍କୁ ବିନାଶ କରିଛ । ଏବେ ମୋର ଜୀବନ କ'ଣ ହେବ ? ମୋର ସର୍ବନାଶ ହୋଇଗଲା । ତମେ ସେତେବେଳେ ଟିକିଏ ମଧ୍ୟ ଚିନ୍ତା କଲ ନାହିଁ ?"

ରାବଣ କହିଲା, "ଦେଖ ଭଉଣୀ, ଯାହା ହେବାର ଥିଲା ହୋଇ ଯାଇଛି । ମୁଁ ଯୁଦ୍ଧ କରିବା ବେଳେ ଉନ୍ମତ୍ତ ହୋଇଯାଏ । ସେତେବେଳେ ଭଲମନ୍ଦ, ଆପଣାପର ଜ୍ଞାନ ମୋର ନଥାଏ । ଅଜ୍ଞାନବଶରେ ମୁଁ ଏପରି ଅପରାଧ କରିଛି । ଏବେ ସମଗ୍ର ଦଣ୍ଡକାରଣ୍ୟ ଅଞ୍ଚଳର ତୁ ଅଧିକାରିଣୀ ହୋଇ ରହିବୁ । ଆମର ସମ୍ପର୍କୀୟ ଭାଇ ଖର ଓ ଦୂଷଣ ଚଉଦ ହଜାର ସୈନ୍ୟ ନେଇ ତୋତେ ସର୍ବଦା ରକ୍ଷା କରିବେ ଓ ତୋର ଆଜ୍ଞାକାରୀ ହୋଇ ସେମାନେ ରହିବେ । ମୁଁ ସେ ବ୍ୟବସ୍ଥା କରୁଛି ।"

ରାବଣର ବ୍ୟବସ୍ଥା ଅନୁସାରେ ସୂର୍ପଣଖା ଦଣ୍ଡକାରଣ୍ୟରେ ସୁଖରେ ରହିଥାଏ ।

## ୭. ଇନ୍ଦ୍ରଜିତ ମେଘନାଦ



ତା'ପରେ ରାବଣ ନିକୁମ୍ଭିଲା ବଣରେ ଯାଇ ପହଞ୍ଚିଲା । ସେଠାରେ ଯାଇ ଦେଖିଲା ପୁଅ ମେଘନାଦ ବସି ଯଜ୍ଞ କରୁଛି । ପୁରୋହିତ ଶୁକ୍ରାଚାର୍ଯ୍ୟ । ରାବଣ ଆନନ୍ଦରେ ପୁତ୍ରକୁ ଆଲିଙ୍ଗନ କରି ପଚାରିଲା, "ପୁଅ, ତୁ ଏ ଯଜ୍ଞ କ'ଣ ପାଇଁ କରୁଛୁ ?"

ତା'ର ଉତ୍ତରରେ ଶୁକ୍ରାଚାର୍ଯ୍ୟ କହିଲେ, "ରାବଣ, ତୁମର ପୁତ୍ର ସାତଟି ଯଜ୍ଞ କରିବା ପାଇଁ ସଂକଳ୍ପବଦ୍ଧ । ଅଗ୍ନିଷ୍ଟୋମ, ଅଶ୍ୱମେଧ, ରାଜସୂୟ, ଗୋମେଧ ଓ ବୈଷ୍ଣବ ଇତ୍ୟାଦି ଯଜ୍ଞ ସବୁ ବ୍ୟତୀତ ସେ ଏକ ଦୁର୍ଲଭ ଯଜ୍ଞ କରି ସଫଳ ହୋଇଛନ୍ତି । ତାହା ହେଉଛି; "ମହେଶ୍ୱର ଯଜ୍ଞ" ସେହି ଯଜ୍ଞ ଶେଷରେ ସେ ଶିବଙ୍କର ଦର୍ଶନ ଲାଭ କରିଛନ୍ତି ଓ ତାଙ୍କ କୃପାରୁ ସେ ଇଚ୍ଛାଗାମୀ ରଥ, ଚତୁର୍ଦ୍ଦିଗରେ ଅନ୍ଧକାର ସର୍ଜନା କରିବା ପାଇଁ ମାୟାଶକ୍ତି ଓ ଶକ୍ତିଶାଳୀ ଧନୁର୍ବାଣ ମଧ୍ୟ ଲାଭ କରିଛନ୍ତି । ଏବେ ସେ ସପ୍ତମ ଯଜ୍ଞ କରୁଛନ୍ତି ।"

ଶୁକ୍ରାଚାର୍ଯ୍ୟଙ୍କ କଥାରେ ରାବଣ ସନ୍ତୁଷ୍ଟ ହେବା ଦୂରେ ଥାଉ, ବରଂ କ୍ରୋଧବଶରେ କହିଲା; "ଆଚାର୍ଯ୍ୟ, ତମେ ମେଘନାଦ ପାଇଁ ଏହି ସବୁ ଯଜ୍ଞ କରିବାର ବ୍ୟବସ୍ଥା କରି କିଛି ଭଲ କାମ କରିନାହଁ, ଇନ୍ଦ୍ର ଆଦି ଦେବତାଗଣ ଆମର ଶତ୍ରୁ । ସେହି ଦେବତାମାନଙ୍କୁ ସନ୍ତୁଷ୍ଟ କରିବାକୁ ତୁମେ ଯେ ଏତେ ଧନ ନଷ୍ଟ କଲ ତା'ର କିଛି ମାନେ ହୁଏନାହିଁ । ଯେତିକି ପୁଣ୍ୟ ହେଲାଣି ତାହା ଯଥେଷ୍ଟ । ଏବେ ମୁଁ ପୁଅକୁ ସାଙ୍ଗରେ ନେଇ 'ଦିଗ୍‌ବିଜୟରେ ବାହାରିବ । ଯଜ୍ଞ ସେତିକି ଥାଉ ।"

ଏହି ସମୟରେ ବିଭୀଷଣ ଆସି ରାବଣକୁ ଏକ ଦୁଃସମ୍ବାଦ ଦେଲା । କୁମ୍ଭୀନସ ନାମକ ଏକ କନ୍ୟାକୁ ରାବଣର ପ୍ରାସାଦରୁ ମଧୁ ରାକ୍ଷସ ଅପହରଣ କରି ନେଇଛି । କୁମ୍ଭୀନସ ରାବଣର ସମ୍ପର୍କରେ ଭଉଣୀ । ପିଲାଟି ଦିନରୁ ରାବଣର ମା' ତାକୁ ପାଳିଥିଲା । ତାକୁ ନେଇଯିବା ବେଳେ ରାବଣ ଦିଗ୍‌ବିଜୟ କରିବାକୁ ଯାଇଥିଲା । କୁମ୍ଭକର୍ଣ୍ଣ ଶୋଇଥିଲା ଓ ବିଭୀଷଣ ଜଳମଗ୍ନ ହୋଇ ତପସ୍ୟା କରୁଥିଲା ।

ରାବଣ ନିଜେ ଅନେକ କନ୍ୟାଙ୍କୁ ଅପହରଣ କରିଥିଲା । କିନ୍ତୁ ନିଜ ଘରୁ ଭଉଣୀକୁ କେହି ଅପହରଣ କରି ନେଇଯାଇଛି ଶୁଣି ସେ ରାଗରେ ଅଗ୍ନିଶର୍ମା ହୋଇ ତୁରନ୍ତ ମଧୁକୁ ସଂହାର କରିବା ପାଇଁ ସୈନ୍ୟସଜ୍ଜା କରି ପ୍ରସ୍ତୁତ ହେଲା । ଇତିମଧ୍ୟରେ ମଧୁର ବିଧିମତେ କୁମ୍ଭୀନସୀ ସହିତ ବିବାହ ହୋଇ ସାରିଥାଏ । କୁମ୍ଭୀନସୀ ଏସବୁ ଖବର ଶୁଣି ରାବଣ ପାଖକୁ ଯାଇ କହିଲା, "ଭାଇ, ଏବେ ତ ମଧୁ ତୁମର ଭଣୋଇ ହୋଇ ସାରିଲାଣି । ତାକୁ ମାରିବା ମାନେ ମୋର ସର୍ବନାଶ କରିବା । ଏବେ ଆମ ଉପରେ ଦୟା କର ।"



ରାବଣର ହୃଦୟ ତରଳିଗଲା । ସେ କହିଲା, "ଯେତେବେଳେ ସେ ତତେ ବାହା ହୋଇ ସାରିଛି, ମୋର ତାକୁ ସଂହାର କରିବାର କୌଣସି ମାନେ ନାହିଁ । ସେ ଯଦି ଭଣୋଇ ହେଲା ତେବେ ମୋ ସହିତ ଗୃଲ୍ଲ ଯୁଦ୍ଧରେ ମୋର ସହାୟତା କରିବ ।"

ରାବଣର ଏପରି ସାନ୍ତ୍ୱନାପୂର୍ଣ୍ଣ କଥା ଶୁଣି କୁମ୍ଭୀନସୀ ନିଶ୍ଚିନ୍ତ ହେଲା । ସେ ପ୍ରସନ୍ନ ହୋଇ ମଧୁ ପାଖକୁ ଯାଇ କହିଲା, "ମୋ ଭାଇଙ୍କର ମନ ବଦଳି ଯାଇଛି । ସେ ଗୃହାନ୍ତ ତୁମେ ତାଙ୍କ ସହିତ ଯୁଦ୍ଧକୁ ଯାଇ ତାଙ୍କର ସହାୟତା କରିବ । ଗୁରୁଜନମାନଙ୍କର ଶୁଭଦୃଷ୍ଟି ଓ ସ୍ନେହ ଆମ ପାଇଁ ମଙ୍ଗଳକର ।"

ମଧୁ ଏସବୁ ଶୁଣି ଖୁସି ହୋଇ ନାନା ସାମଗ୍ରୀ ସବୁ ନେଇ ରାବଣକୁ ସ୍ୱାଗତ କଲା ଓ ଘରେ ବହୁ ମୂଲ୍ୟବାନ ଜିନିଷ ସବୁ ଉପଢୌକନ ସ୍ୱରୂପ ଦେଇ ତା'ର ସତ୍କାର କଲା ।

ରାବଣ ସେଠାରେ ଦିନଟିଏ ମାତ୍ର ରହି ପରଦିନ ପୁଣି ଯୁଦ୍ଧଯାତ୍ରା କଲା ଓ ଶେଷରେ ବୈଶ୍ରବଣଙ୍କ ନିବାସସ୍ଥଳୀ କୈଳାସରେ ପହଞ୍ଚି ସେହିଠାରେହିଁ ତମ୍ବୁ ପକାଇ ରହିଲା । ରାତିରେ ଚତୁର୍ଦ୍ଦିଗ ଚନ୍ଦ୍ରକିରଣରେ ଚମତ୍କାର ଦିଶୁଥାଏ । ଶୀତଳ ପବନ ବହୁଥାଏ । ଗଛଗୁଡ଼ିକ ମାନଙ୍କରେ କିନ୍ନରମାନେ ଗାନ କରୁଥା'ନ୍ତି । ସବୁଆଡ଼େ ସୁନ୍ଦର ଫୁଲ ସବୁ ଫୁଟି ବାସୁଥାଏ । ରାବଣ ପର୍ବତର ଏହି ସୌନ୍ଦର୍ଯ୍ୟ ବସି ବସି ଦେଖୁଥାଏ ।



ଠିକ୍ ଏହି ସମୟରେ ସୁନ୍ଦରୀ ଅପ୍‌ସରା ରମ୍ଭା ଚମତ୍କାର ଭାବରେ ସାଜସଜ୍ଜା ହୋଇ ସେଇ ରାସ୍ତାରେ ଯାଉଥିଲା । ତା'ର ଅପୂର୍ବ ସୌନ୍ଦର୍ଯ୍ୟରେ ମୁଗ୍‌ଧ ହୋଇ ରାବଣ ତା' ନିକଟକୁ ଯାଇ କହିଲା, "ସୁନ୍ଦରୀ, ଏତେ ରାତିରେ, ଏପରି ସୁନ୍ଦର ଦିବ୍ୟ ଆଭୂଷଣରେ ଅଳଙ୍କୃତ ହୋଇ କୁଆଡ଼େ ଯାଉଛ ? କିଏ ସେହି ଭାଗ୍ୟବାନ ଯିଏ ତମକୁ ସ୍ତ୍ରୀ କରି ପାଇବ ? ଶୁଣ, ତ୍ରିଲୋକରେ ଯଶ ପ୍ରାପ୍ତ କରିଥିବା ରାଜା ହେଉଛି ମୁଁ । ମୋ ନାମ ରାବଣ । ମୋ ସମାନ ଶକ୍ତିଶାଳୀ ଏ ବିଶ୍ୱ-ବ୍ରହ୍ମାଣ୍ଡରେ କେହି ନାହିଁ । ତମେ ମତେ ପତି ରୂପରେ ସ୍ୱୀକାର କର ।"

ରାବଣ ବିଷୟରେ ରମ୍ଭା ଆଗରୁ ଶୁଣିଥିଲା । ତେଣୁ ସେ ଅଯଥା ବାକ୍ୟବ୍ୟୟ ନ କରି ନମ୍ର ଭାବରେ କହିଲା, "ମହାଶୟ, ଆପଣ ଶକ୍ତିଶାଳୀ । ରକ୍ଷା ଆପଣଙ୍କର ଧର୍ମ । ଯଦି ମୁଁ ବିପଦରେ ପଡ଼ନ୍ତି ଆପଣ ରକ୍ଷା କରନ୍ତେ । କିନ୍ତୁ ଯେଉଁ ସବୁ କଥା କହିଲେ ତାହା ଆପଣଙ୍କ ମୁହଁରେ ଶୋଭା ପାଉନାହିଁ । ମୁଁ ଆପଣଙ୍କ ଭାତୃଷ୍ପୁତ୍ର ନଳକୁବେରଙ୍କର ପତ୍ନୀ ଓ ସମ୍ପର୍କରେ ଆପଣଙ୍କ ପୁତ୍ରବଧୂ । ମୁଁ ଏବେ ତାଙ୍କରି ପାଖକୁ ଯାଉଛି । ଆପଣ ମୋତେ ପଥ ଛାଡ଼ି ଦିଅନ୍ତୁ ।"

ରାବଣ ରମ୍ଭାର କଥା ଶୁଣି ଅଟ୍ଟହାସ କଲା ଓ ତା' ସହିତ ନାନା ପ୍ରକାର ଅସଦ ବ୍ୟବହାର କଲା । ରମ୍ଭା ଦୁଃଖିତ ଓ ଲଜ୍ଜିତ ହୋଇ ନଳ-କୁବେରଙ୍କ ପାଖକୁ ଗଲା ଓ ସବୁକଥା କହିଲା ।

ଏକଥା ଶୁଣି ନଳକୁବେର ଖୁବ୍ କ୍ରୁଦ୍ଧ ହେଲେ ଓ ହାତରେ ଜଳ ଧରି ରାବଣକୁ ଅଭିଶାପ ଦେଇ କହିଲେ, "ଆଜିଠାରୁ ରାବଣ ଭବିଷ୍ୟତରେ କୌଣସି ନାରୀକୁ ଏପରି ଅସଦାଚରଣ କଲେ ତାହାର ଶିର ଶତଧା ବିଦୀର୍ଣ୍ଣ ହେବ ।"

ଏହି ଅଭିଶାପ ବିଷୟ ରାବଣ ଦ୍ୱାରା ଅପହୃତ କନ୍ୟାମାନେ ଶୁଣି ବହୁତ ଆନନ୍ଦ ହେଲେ ଓ ନିର୍ଭୟ ହୋଇ ରହିଲେ ।

ତା'ପରେ ରାବଣ ନିଜର ସୈନ୍ୟସାମନ୍ତ ନେଇ ସ୍ୱର୍ଗରେ ଦେବତାଙ୍କୁ ଆକ୍ରମଣ କଲା ।

ଏ ଅବସ୍ଥା ଦେଖି ଇନ୍ଦ୍ର ଯାଇ ଭଗବାନ୍ ନାରାୟଣଙ୍କୁ କହିଲେ, "ପ୍ରଭୁ, ଯେତେଥର ଶତ୍ରୁମାନେ ସ୍ୱର୍ଗରାଜ୍ୟ ଆକ୍ରମଣ କରିଛନ୍ତି ଆପଣହିଁ ଆମମାନଙ୍କୁ ରକ୍ଷା କରିଛନ୍ତି ଅଥବା ଆପଣଙ୍କ ସହାୟତାରେ ମୁଁ ସେମାନଙ୍କୁ ହରାଇ ଦେଇଛି । ଏଥରକ ଏ ଭୟଙ୍କର ଶକ୍ତିଶାଳୀ ରାକ୍ଷସ ପାଇଁ କ'ଣ କରାଯିବ ?"

"ଇନ୍ଦ୍ର, ଏଥରକ ମୁଁ ତା' ସହିତ ଯୁଦ୍ଧ କରିବାକୁ ଯିବିନାହିଁ । ଗଲେ ମଧ୍ୟ ସେ ମରିବ ନାହିଁ । ବ୍ରହ୍ମାଙ୍କ ବରରେ ସେ ଶକ୍ତିଶାଳୀ । ଯେତେବେଳେ ସମୟ ଆସିବ ମୁଁ ତାକୁ ମାରିବି । ଏଥରକ ତମେ ଯାଇ ଦେବସେନାଙ୍କୁ ନେଇ ତା' ସହିତ ଯୁଦ୍ଧ କର । ଭୟ କରିବାର କିଛି କାରଣ ନାହିଁ ।" ନାରାୟଣ ଇନ୍ଦ୍ରଙ୍କୁ ବୁଝାଇ କହିଲେ । ତା'ପରେ ରାକ୍ଷସ ଓ ଦେବତାଙ୍କ ମଧ୍ୟରେ ଭୟଙ୍କର ଯୁଦ୍ଧ ହେଲା । ଯୁଦ୍ଧରେ ଦେବତାମାନେ ଅପାର ପରାକ୍ରମ ସହିତ ଯୁଦ୍ଧ କଲେ ଓ ଶେଷରେ ଇନ୍ଦ୍ର ରାବଣକୁ ବନ୍ଦୀ କଲେ । କିନ୍ତୁ ତା'ପରେ ରାବଣର ପୁଅ ମେଘନାଦ ମାୟା ଯୁଦ୍ଧ କରି ଇନ୍ଦ୍ରଙ୍କୁ ପରାଜିତ କରି ତାଙ୍କୁ ବନ୍ଦୀ କଲା ଓ ରାବଣକୁ ମୁକ୍ତ କଲା । ସେହି ଦିନଠାରୁ ମେଘନାଦର ଅନ୍ୟ ନାମ ହେଲା ଇନ୍ଦ୍ରଜିତ୍ । ସେ ଘୋଷଣା କରି ରାବଣକୁ କହିଲା, "ବାବା, ଇନ୍ଦ୍ରକୁ ମୁଁ ବନ୍ଦୀ କରିଛି । ଏବେ ତୁମେ ନିର୍ଭୟରେ ସ୍ୱର୍ଗ ସହିତ ତ୍ରିଲୋକ ଶାସନ କର ।"



ରାବଣ ବନ୍ଦୀ ଇନ୍ଦ୍ର ସୈନ୍ୟସାମନ୍ତ ଓ ପୁତ୍ରକୁ ଧରି ଲଙ୍କା ଫେରି ଆସିଲା । ଦେବତା-ମାନେ ଅସହାୟ ହୋଇ ବ୍ରହ୍ମାଙ୍କ ପାଖକୁ ଯାଇ ଇନ୍ଦ୍ରଙ୍କୁ ଉଦ୍ଧାର କରିବା ପାଇଁ କହିଲେ । ବ୍ରହ୍ମା ଯାଇ ଲଙ୍କାରେ ପହଞ୍ଚି ରାବଣକୁ କହିଲେ, "ରାବଣ, ତୋର ପୁତ୍ର ମେଘନାଦର ବୀରତ୍ୱ ଓ ପରାକ୍ରମ ଅତ୍ୟନ୍ତ ପ୍ରଶଂସନୀୟ । ସେ ଆଜିଠାରୁ ଇନ୍ଦ୍ରଜିତ ନାମରେ ପରିଚିତ ହେବ । ତାହାରି ଯୋଗୁହିଁ ତୁ ଆଜି ଦେବତାମାନଙ୍କ ଉପରେ ବିଜୟ ଲାଭ କରିଛୁ । ତେବେ ଯାହା ହେବାର ସବୁ ହୋଇ ଯାଇଛି । ଏବେ ଇନ୍ଦ୍ରଙ୍କୁ ତୁ ମୁକ୍ତ କରି ଦେ ।"



"ପିତାମହ, ଯଦି ଆପଣ କହୁଛନ୍ତି ମୁଁ ଇନ୍ଦ୍ରଙ୍କୁ ଛାଡିଦେବି । କିନ୍ତୁ ମୋତେ ଆପଣ ଅମରତ୍ୱ ପ୍ରଦାନ କରନ୍ତୁ ।" ଇନ୍ଦ୍ରଜିତ କହିଲା ।

"ବତ୍ସ, କୌଣସି ପ୍ରାଣୀ ପାଇଁ ସମ୍ପୂର୍ଣ୍ଣ ଅମରତ୍ୱ ଦିଆହୁଏ ନାହିଁ । ବିଧିର ସେ ବିଧାନକୁ କେହି ବଦଳାଇ ପାରିବ ନାହିଁ । ତୁ ଅନ୍ୟ କୌଣସି ବର ମାଗ । ମୁଁ ଅବଶ୍ୟ ଦେବି ।" ବ୍ରହ୍ମା କହିଲେ ।

"ଯଦି ଏପରି କଥା ତେବେ ପୂର୍ଣ୍ଣ ଅମରତ୍ୱ ସ୍ଥାନରେ ମୋତେ ଆଂଶିକ ଭାବରେ ତାହା ଦିଅନ୍ତୁ । ମୁଁ ଯଜ୍ଞ ଦ୍ୱାରା ଆପଣଙ୍କୁ ସନ୍ତୁଷ୍ଟ କରିବି । ପୁଣି ପ୍ରତ୍ୟେକ ଥର ମୁଁ ଯୁଦ୍ଧ ଯାତ୍ରା କରିବା ପୂର୍ବରୁ ଯଜ୍ଞ କରିବି ଓ ଅଗ୍ନିଦେବ ମୋତେ ଏକ ରଥ ଦେବେ । ସେଥିରେ ମୁଁ ଚଢ଼ି ଯୁଦ୍ଧ କଲେ ମୋତେ ତିନିଲୋକରେ କେହି ପରାଜିତ କରି ପାରିବେ ନାହିଁ । ଯଦି ଯଜ୍ଞ ଶେଷହେବା ପୂର୍ବରୁ କେହି ମୋତେ ମାରି ଦିଏ ତେବେ ଠିକ୍ ଅଛି । ଏହିପରି ଆଂଶିକ ଅମରତ୍ୱ ମୁଁ ଇଚ୍ଛା କରୁଛି ।" ଇନ୍ଦ୍ରଜିତ ବ୍ରହ୍ମାଙ୍କୁ କହିଲା ।

ବ୍ରହ୍ମା "ତଥାସ୍ତୁ" କହି ଇନ୍ଦ୍ରଜିତକୁ ତା'ର ଅଭିଳଷିତ ବର ଦେଲେ । ରାବଣ ଇନ୍ଦ୍ରଙ୍କୁ ମୁକ୍ତ କଲା । ଦେବତାମାନେ ଇନ୍ଦ୍ରଙ୍କୁ ନେଇ ସ୍ୱର୍ଗକୁ ଲେଉଟି ଆସିଲେ ।

ଯୁଦ୍ଧର ମଦରେ ମତ୍ତ ହୋଇ ରାବଣ ବହୁତ ରାଜ୍ୟ ଆକ୍ରମଣ କରିଥିଲା । ସବୁ ସ୍ଥାନରେ ଯେ ସେ ବିଜୟୀ ହୋଇଥିଲା ତାହା ନୁହେଁ । ତା'ର ପରାଜୟର କେତେକ କାହାଣୀ ମହାମୁନି ଅଗସ୍ତି ଶ୍ରୀରାମଙ୍କୁ ଶୁଣାଇଥିଲେ । ସେଥିରୁ ଗୋଟିଏ ହେଲା ତା'ର କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ସହିତ ଯୁଦ୍ଧ । ରାବଣ ପୂର୍ବରୁ ତାଙ୍କର ପରାକ୍ରମ ବିଷୟ ଶୁଣିଥିଲା, ତେଣୁ ସିଧା ମାହେଷ୍ମତୀପୁରକୁ ଯାଇ ସେଠାରେ କାର୍ତ୍ତବୀର୍ଯ୍ୟାର୍ଜୁନଙ୍କ ଦୁର୍ଗ ଆକ୍ରମଣ କଲା । କିନ୍ତୁ ଶୁଣିବାକୁ ପାଇଲା ଯେ ସେ ରାଜଧାନୀରେ ନାହାନ୍ତି । ସେ ରାଣୀମାନଙ୍କୁ ଧରି ସେତେବେଳେ ନର୍ମଦା ନଦୀରେ ସ୍ନାନ କରିବାକୁ ଯାଇଛନ୍ତି ।



ରାବଣ ମଧ୍ୟ ସସୈନ୍ୟେ ଯାଇ ସେହିଠାରେ ପହଞ୍ଚିଲା । ତା'ପରେ ସେ ନଦୀରେ ସ୍ନାନ କରି ନଦୀ ତଟରେ ଏକ ଶିବଲିଙ୍ଗ ସ୍ଥାପନା କରି ପୂଜା କଲା । ତା' ସହିତ ସର୍ବଦା ଗୋଟିଏ ସୁବର୍ଣ୍ଣର ଶିବଲିଙ୍ଗ ଥାଏ । ସେ ପୂଜା କରିବା ପରେ ଭକ୍ତି ଗଦ୍‌ଗଦ୍ ହୋଇ ଗୀତ ଗାଇ ଗାଇ ନାଚିଲା । ତା' ପରେ ଦେଖିଲା ହଠାତ୍ ନଦୀ ଫୁଲି ଉଠୁଛି ଓ ତା'ର ପୂଜା ଫୁଲ ସବୁ ଧୋଇ ନେଉଛି । ସେଥିରେ ଫେଣ ମଧ୍ୟ ଆସୁଛି । ସେ ମନ୍ତ୍ରୀ ଶୁକସାରଣଙ୍କୁ ଡାକି କହିଲା, "ଯାଇ ଦେଖ ନଦୀ ସ୍ରୋତର ଗତି କାହିଁକି ବାରମ୍ବାର ବଦଳୁଛି, ନଦୀର ପାଣି ଫୁଲି ଉଠୁଛି ଓ ସେଥିରେ ଏତେ ଫେଣ ଦେଖା ଯାଉଛି ।"

"ଯେ ଆଜ୍ଞା" କହି ସେମାନେ ଗଲେ ଓ ଅନୁସନ୍ଧାନ କରି କିଛି ସମୟ ପରେ ଫେରି ଆସି ରାବଣଙ୍କୁ କହିଲେ, "ମହାରାଜ, ନଦୀର ଏକ ସ୍ଥାନରେ ମହାବୃକ୍ଷ ପରି ବିଶାଳ ଏକ ମାନବ ତାହାର ସ୍ତ୍ରୀ ଗଣଙ୍କ ସହିତ ସ୍ନାନ କରୁଛି । ତାହାର ସହସ୍ର ହାତ । ସେଥିରେ ସେ ସମଗ୍ର ନଦୀର ଧାରକୁ ବନ୍ଦ କରି ଦେଉଛି ଓ ପୁଣି ଛାଡ଼ି ଦେଉଛି । ଏହିପରି ଖେଳୁଛି । ସେଥିଯୋଗୁ ପାଣିରେ ଦୁଇ ବିପରୀତ ସ୍ରୋତ ଦେଖା ଦେଉଛି ଓ ସ୍ରୋତ ବାଧାପ୍ରାପ୍ତ ହେବାରୁ ପାଣି ଫୁଲି ଉଠୁଛି ଓ ଫେଣ ସୃଷ୍ଟି ହେଉଛି ।"

ଏକଥା ଶୁଣି ସେ ଜାଣିନେଲା ଯେ ସେ ମହାନ୍ ବ୍ୟକ୍ତିହିଁ କାର୍ତ୍ତବୀର୍ଯ୍ୟାର୍ଜୁନ । ସେହିଠାରୁହିଁ ସେ ଯୁଦ୍ଧ କରିବାକୁ ବାହାରିଲା । ନର୍ମଦା ତୀରରେ କାର୍ତ୍ତବୀର୍ଯ୍ୟାର୍ଜୁନଙ୍କର ଛାଉଣୀ ସବୁ ପଡ଼ିଥାଏ । ସେଥିରେ ମନ୍ତ୍ରୀ ଓ ସୈନ୍ୟମାନେ ଥା'ନ୍ତି । ରାବଣ ସେଠାରେ ପହଞ୍ଚି ତାଙ୍କ ମନ୍ତ୍ରୀମାନଙ୍କୁ କହିଲା, "ତୁମ ରାଜାଙ୍କୁ କହିଦିଅ ଲଙ୍କାଧିପତି ରାବଣ ଆସିଛି ତୁମ ସହିତ ଯୁଦ୍ଧ କରିବାକୁ । ଶୀଘ୍ର ଆସି ଯୁଦ୍ଧ କର ।"

ମନ୍ତ୍ରୀମାନେ କହିଲେ, "ଲଙ୍କାଧିପତି, ଆପଣଙ୍କର ଇଏ କିପରି କଥା ? ଜଣେ ରାଜା ତାଙ୍କର ରାଣୀମାନଙ୍କ ସହିତ ସ୍ନାନରତ । ଆଉ ଆପଣ ଏଇ ସମୟଟି ବାଛିଲେ ଯୁଦ୍ଧ କରିବାକୁ ?

ଏହା ତ ସମ୍ପୂର୍ଣ୍ଣ ଅନ୍ୟାୟ । ଆପଣ ବର୍ତ୍ତମାନ ଫେରିଯା'ନ୍ତୁ । କାଲି ଏହି ସମୟକୁ ଏଠାକୁ ଆସିବେ, ଆମେ ରାଜାଙ୍କୁ କହି ପ୍ରସ୍ତୁତ ଥିବୁ ।"

କିନ୍ତୁ ରାବଣ ମନ୍ତ୍ରୀମାନଙ୍କ କଥା ନ ଶୁଣି ରାଗିଗଲା ଓ ଜିଦ୍ ଧରି କହିଲା, "ଯୁଦ୍ଧ ଏଇଠି ହେବ ଓ ଆଜିହିଁ ହେବ ।"

ରାବଣର ଏପରି ଜିଦ୍ ଦେଖି ମନ୍ତ୍ରୀମାନେ କହିଲେ, "ଠିକ୍ ଅଛି, ପ୍ରଥମେ ଆପଣ ଆମ ସହିତ ଯୁଦ୍ଧ କରନ୍ତୁ । ଆମକୁ ହରାଇ ପାରିଲେ ଯାଇ ରାଜାଙ୍କ ସହିତ ଯୁଦ୍ଧ କରିବେ ।"

ଦୁଇଦଳଙ୍କ ମଧ୍ୟରେ ଯୁଦ୍ଧ ଆରମ୍ଭ ହେଲା । ରାକ୍ଷସ ସୈନ୍ୟମାନେ ଅନେକ ମନୁଷ୍ୟ ସୈନ୍ୟଙ୍କୁ ମାରିଲେ ଓ ଖାଇଗଲେ । କୋଳାହଳ ଶୁଣି କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଏକ ବିରାଟ ଗଦା ନେଇ ଯୁଦ୍ଧ କ୍ଷେତ୍ରକୁ ଆସିଲେ । ସେଠାରେ ସେ ଅଳ୍ପ ସମୟ ମଧ୍ୟରେ ସମସ୍ତଙ୍କୁ ପରାଜିତ କଲେ ଓ ଶେଷରେ ରାବଣର ବକ୍ଷରେ ସେହି ବିରାଟ ଗଦା ଦ୍ୱାରା ପ୍ରହାର କଲେ । ଗଦାଟି ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିଗଲା; ରାବଣ ମଧ୍ୟ ମୂର୍ଚ୍ଛା ହୋଇ ପଡ଼ିଗଲା । ରାବଣକୁ ବନ୍ଦୀ କରି ସେ ନିଜ ରାଜଧାନୀକୁ ଲେଉଟି ଆସିଲେ ।

ଏ ଖବର ଜାଣିବା ପରେ ଋଷି ପୁଲସ୍ତ୍ୟ ଆସି ସେଠାରେ ପହଞ୍ଚିଲେ । କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଆଦରରେ ତାଙ୍କର ସତ୍କାର କଲେ । ପୁଲସ୍ତ୍ୟ କହିଲେ, "ବତ୍ସ, କାର୍ତ୍ତବୀର୍ଯ୍ୟ, ତିନିଲୋକରେ ଅପରାଜେୟ ମୋର ଏହି ନାତି ରାବଣକୁ ହରାଇ ତୁମେ ଏକ ପ୍ରଶଂସନୀୟ କାର୍ଯ୍ୟ କରିଛ । ଏବେ ନିଜ ଭିତରେ ଶତ୍ରୁତା ଭୁଲି ତା'ର ଦୋଷ କ୍ଷମା କରି ତାକୁ ମୁକ୍ତ କରିଦିଅ । ତୁମେ ମୋର ପ୍ରିୟ, ସେ ମୋର ନାତି । ତୁମ ଦୁହିଁଙ୍କର ବନ୍ଧୁତା ଦେଖିଲେ ମୁଁ ଖୁସି ହେବ ।"

ଋଷିଙ୍କ କଥା ଅନୁସାରେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ରାବଣକୁ ମୁକ୍ତ ଦେଲେ ଓ ଅଗ୍ନିକୁ ସାକ୍ଷୀ ରଖି ଦୁହେଁ ଦୁହିଁଙ୍କର ବନ୍ଧୁ ହେଲେ । ତା'ପରେ କାର୍ତ୍ତବୀର୍ଯ୍ୟାର୍ଜ୍ଜୁନ ଅନେକ ଉପଢୌକନ ସହ ରାବଣକୁ ସାଦର ବିଦାୟ ଦେଲେ ।





# ସୁନା ଚୁଡ଼ି

ଗଗନଚନ୍ଦ୍ରଙ୍କର ଦୁଇ ପୁତ୍ର ଥିଲେ । ରାମ ଓ କୃଷ୍ଣ । ଦୁହେଁ ସହରରେ ଶିକ୍ଷା ଶେଷ କରି ଫେରି ଆସିଲେ । ତା'ପରେ ଚାକିରି କରିବାକୁ କୌଣସି ଚେଷ୍ଟା ସୁଦ୍ଧା କରୁନଥାନ୍ତି । ସେମାନେ ଜାଣନ୍ତି ବାପାଙ୍କର ବହୁତ ଜମିଜମା ଅଛି । ତେଣୁ ଦୁହେଁ ସକାଳୁ ଘରେ ଖାଇଦେଇ ଯାଇ ମନ୍ଦିର ପାଖ ଚଉତରାରେ ଦଳେ ବାଜେ ଲୋକଙ୍କ ସହିତ ଜୁଆ ଖେଳନ୍ତି । ମଧ୍ୟାହ୍ନରେ ଘରକୁ ଲେଉଟି ଆସି ଖାଇ ଶୋଇ ପଡ଼ନ୍ତି । ପୁଣି ସନ୍ଧ୍ୟାବେଳେ ସାଙ୍ଗମାନଙ୍କ ସହିତ ଆଡ୍ଡା ଦିଅନ୍ତି ।

ଦିନେ ଗଗନଚନ୍ଦ୍ର ପୁଅ ଦୁହିଁଙ୍କୁ ପାଖକୁ ଡାକି ଖୁବ୍ ଗାଳି ଦେଲେ । ତା'ପରେ ଦୁଇ ଭାଇ ନିଜ ନିଜ ଭିତରେ କଥାବାର୍ତ୍ତା ହୋଇ ବାପାଙ୍କ ରାଗରୁ ବାହି ପାଇବା ପାଇଁ ଏକ ଉପାୟ ପାଞ୍ଚିଲେ । ରାମ କହିଲା, "ଉପାୟଟି ହେଉଛି ଆମେ ସବୁଦିନେ ସକାଳେ ଖାଇସାରି କିଛି ପଇସା ହାତରେ ଧରି ସହରକୁ ଚାକିରି ଖୋଜି ଯାଉଛୁ କହି ଚାଲିଯିବା । ଏଇ ଗାଁ ମୁଣ୍ଡରେ କେଉଁଠି ସମୟ କଟାଇ ସନ୍ଧ୍ୟାକୁ ଫେରିବା । ଖାଦ୍ୟ ତ ତିଆରି ହୋଇଥିବ । ଆଉ ଚିନ୍ତା କ'ଣ ?"

କୃଷ୍ଣ ତ ଏ ଯୋଜନାକୁ ବହୁତ ପସନ୍ଦ କଲା । ପରଦିନ ଦୁଇ ଭାଇ ସକାଳୁ ଖାଇ ବାହାରି ପଡ଼ିଲେ । ଗ୍ରାମ ଶେଷରେ ଗୋଟିଏ ବଡ଼ ଅଶ୍ୱତ୍ଥ ଗଛ ଥାଏ । ସେଇଠି ପହଞ୍ଚିବା ମାତ୍ରେ କୃଷ୍ଣ କହିଲା, "ବାଃ, ଇଏ ତ ବହୁତ ଭଲ ଜାଗା ! ଏଇଠି ରହିବା । ଭଲ ଛାଇ ହୋଇଛି । ଗଛତଳ ସଫା କରିଦେବା । ବାସ୍ ଏଇଠି ବସି ସମୟ କଟେଇ ଦେବା ।"

ତା'ପରେ ଦୁଇ ଭାଇ ଗଛତଳୁ ଢେଳା ପଥର ଓ ଶୁଖିଲା ପତ୍ର ସଫା କରିବାକୁ



"ସତେ? ଆହା ତୁମେ ତ ବଡ଼ ସୁନ୍ଦର କାମ କରିବାକୁ ଯାଉଛ । ହେଉ ହେଉ, ଭଲ ହେଲା । ମୁଁ ଚାନ୍ଦା ବାବଦରେ ମୋର ଏଇ ଚୁଡ଼ି ଦୁଇଟି ତୁମକୁ ଦେଉଛି । କିନ୍ତୁ ଯେତେ ଶୀଘ୍ର ପାରିବ ମନ୍ଦିର କାମ ଶେଷ କର ।" ଏତିକି କହି ସେ ଚୁଡ଼ି ଦୁଇଟି ସେମାନଙ୍କୁ ଦେଇ ସେଠାରୁ ଚାଲିଗଲେ ।

ଖରାପଡ଼ି ଚୁଡ଼ି ଦୁଇଟି ଝକ୍ ଝକ୍ କରୁଥିଲା । ରାମ କହିଲା, "କୃଷ୍ଣ, ମୁଁ ଭାବୁଛି ଏହାକୁ ବଜାରରେ ବିକିଲେ ଚାରି ହଜାରରୁ କମ୍ ଟଙ୍କା ହେବ ନାହିଁ । ବରଂ ବେଶି ହେବ । ଚାଲ୍ ସହରକୁ ଯାଇ ବିକିବା ।"

"ହଁ, ହଁ, ଯେତେ ଶୀଘ୍ର କାମ ଶେଷ କଲେ ଭଲ । ତୁଳସୀ ଯଦି ଏକଥା ବାପାଙ୍କୁ କହିଦିଏ ତ କଥା ସରିଲା । ପ୍ରଥମେ ଆମେ ଚୁଡ଼ି ବିକି ଟଙ୍କା ରଖିନେବା । ତା'ପରେ ବାପା ପଚାରିଲେ ବାପାଙ୍କୁ କହିଦେବା କି ଆମେ ଏସବୁ ବିଷୟ କିଛି ଜାଣୁନାହିଁ ।" କୃଷ୍ଣ କହିଲା ।

ଲାଗିଲେ । ଏଇ ସମୟରେ ଗ୍ରାମର ତୁଳସୀ ନାମକ ଜଣେ ସ୍ତ୍ରୀଲୋକ ସେଠାରେ ଆସି ପହଞ୍ଚି କହିଲେ "ଆରେ ରାମ, ଆରେ କୃଷ୍ଣ, ତୁମେ ଦୁଇଟା ତ ନିର୍ଘାତ ଅଳସୁଆ । ଆଜି ହଠାତ୍ କ'ଣ ହେଲା ଏଠାରେ କାମ କରୁଛ?"

ରାମ ଅଟ୍ଟାକରି କହିଲା, "ମାଉସୀ, ଆମେ ଏ ପରିଶ୍ରମ କରୁଛୁ ଗ୍ରାମବାସୀଙ୍କ ମଙ୍ଗଳ ପାଇଁ । ଏଠାରେ ପରା ଆମେ ମନ୍ଦିରଟିଏ ତିଆରି କରିବୁ!"

"କେଉଁ ଠାକୁରଙ୍କ ମନ୍ଦିର?" ତୁଳସୀ ପଚାରିଲେ ।

"ଜାହିଁକି? ରାମକୃଷ୍ଣଙ୍କର ମନ୍ଦିର ।" କୃଷ୍ଣ ଉତ୍ତର ଦେଲା ।

ଦୁଇଭାଇ ଯାଇ ସହରରେ ପହଞ୍ଚିଲେ । ସେଠାରେ ଖୋଜି ଖୋଜି ଏକ ସୁନା ଦୋକାନ ପାଇଲେ । ରାମ କହିଲା, "କୃଷ୍ଣ, ଆମେ ତ ସୁନାର ମୂଲ୍ୟ ଜାଣିନେ, ମୁଁ ଦୋକାନ ବାହାରେ ଥିବି । ତୁ ଯାଇ ଦୋକାନରେ ଏପରି ଅଭିନୟ କରିବୁ ଯେପରି ଦୋକାନୀ ଜାଣିବ ତୁ ଚୁଡ଼ି କିଣିବାକୁ ଆସିଛୁ ।

କଥାବାର୍ତ୍ତା କରି ତୁ ସୁନାର ପ୍ରକୃତ ମୂଲ୍ୟ ଜାଣି ଆସିବୁ ।

ଇତମଧ୍ୟରେ ଦୋକାନର କର୍ମଚାରୀ ମଧ୍ୟାହ୍ନ ଭୋଜନ ପାଇଁ ଘରକୁ ଯାଇଥା'ନ୍ତି ନାକେ ମାଲିକ ବସି ଅଳଙ୍କାର ବିକୁଥା'ନ୍ତି । କୃଷ୍ଣକୁ ଅନେକ ରକମର ଚୁଡ଼ି ସବୁ ସେ ଦେଖାଇଲେ । ସେ କୃଷ୍ଣକୁ କହିଲେ, "ପ୍ରଥମେ ଆପଣ ଡିଜାଇନ ପସନ୍ଦ କରନ୍ତୁ । ତା'ପରେ ମୁଁ ସୁନାର ମୂଲ୍ୟ ଓ ଗଢ଼ା ମଜୁରୀ ବିଷୟ କହିବି ।"

କୃଷ୍ଣ ଚୁଡ଼ି ବାଛୁଚି ସେହି ସମୟରେ ଜଣେ ଭଦ୍ରବ୍ୟକ୍ତି ଦୋକାନରେ ପଶି ଦୋକାନୀଙ୍କୁ କହିଲେ, "ମହାଶୟ, ମୋତେ ନୂଆ ପ୍ରକାରର କିଛି ହାର ଦେଖାନ୍ତୁ । ମୂଲ୍ୟ ଦଶହଜାରରୁ ଯେପରି କମ୍ ନ ହୁଏ ।"

ଦୋକାନ ମାଲିକ ବହୁତ ପ୍ରକାରର ହାର ସବୁ ଆଣି ତାଙ୍କୁ ଦେଖାଇଲେ । ଇତମଧ୍ୟରେ କୃଷ୍ଣ ଦେଖିଲା ତୁଳସୀଙ୍କ ଚୁଡ଼ିପରି ହଳେ ଚୁଡ଼ି ମଧ୍ୟ ଅଛି । କୃଷ୍ଣ ତା'ର ଦାମ୍ ପଚାରିଲା । ଦୋକାନୀ ଚୁଡ଼ି ଦୁଇଟି ହାତରେ ଧରି ତା'ର ମୂଲ୍ୟ କହିବାକୁ ଯିବାବେଳେ ପୂର୍ବ ଭଦ୍ରବ୍ୟକ୍ତି ହଠାତ୍ ରାଗି ଉଠି କହିଲେ, "ମୋ ଜୀବନରେ ଆଜି ପ୍ରଥମ ଦେଖୁଛି ଯେ ଦୋକାନୀ ମୋ ପରି ଗ୍ରାହକକୁ ଡିଜାଇନ ଦେଖାଇବାରେ ଅବହେଳା କରି ଅନ୍ୟ ଜଣକୁ ଦେଖାଉଛି । ମୁଁ ଏଠାରେ ମୁହୂର୍ତ୍ତେ ମଧ୍ୟ ରହିବାକୁ ଚାହେଁନାହିଁ ।" ଏତିକି କହି ସେ ସଙ୍ଗେ ସଙ୍ଗେ ରାଗି ଉଠି ଦୋକାନରୁ ବାହାରି ଚାଲିଗଲେ ।





ଜଣେ ଭଲ ଗ୍ରାହକକୁ ହରାଇ ଥିବାରୁ ଦୋକାନୀ ଦୁଃଖିତ ହେଲା । ତା'ପରେ ସେ ହାର ଗୁଡ଼ିକୁ ସଜାଡ଼ି ରଖୁ ରଖୁ ଚମକି ଉଠି ପାଟି କଲେ । ପାଟି ଶୁଣି ସିପାହୀମାନେ ଦୌଡ଼ି ଆସିଲେ । ସିପାହୀମାନଙ୍କୁ ଦେଖି କୃଷ୍ଣ ଚୁପ୍‌ଚାପ ଖସି ଯିବାକୁ ଚେଷ୍ଟା କରିବା ବେଳକୁ ତାକୁ ସେମାନେ ଧରିନେଲେ ଓ ଧମକାଇ ପଚାରିଲେ, "କୁହ, ତମେ କ'ଣ କିଣିବାକୁ ଆସିଛ ?"

ଭୟରେ କୃଷ୍ଣର ମୁହଁରୁ କିଛି କଥା ବାହାରୁ ନଥାଏ । ଦୋକାନୀ ସିପାହୀମାନଙ୍କୁ କହିଲେ, "ମୁଁ ଏହି ଯୁବକକୁ ଚୁଡ଼ି ଦେଖାଉଥିଲି ଆଉ ସେ ବଦମାସ୍ ଚୋର ବାରହଜାର ଟଙ୍କାର ହାରଟିଏ ନେଇ ଗଶ ଦେଖାଇ ପଳାଇଗଲା ।"

ସିପାହୀମାନେ କହିଲେ, "ମନେ ହେଉଛି ଚୋର ଓ ଏ ଯୁବକ ଦୁହିଁଙ୍କ ମଧ୍ୟରେ ସଲ ଅଛି । ପ୍ରଥମେ ଆମେ ଦେଖିବା ଏ କ'ଣ କହୁଛି । କ'ଣ ତମେ ଚୁଡ଼ି କିଣିବାକୁ ଆସିଥିଲ ? ଦେଖାଅ ତ ତୁମ ପାଖରେ ଚୁଡ଼ି କିଣିବା ଭଳି କେତେ ପଇସା ଅଛି ?" ଏତିକି କହି ସେମାନେ ତା ଲୁଗାକୁର୍ତ୍ତା ସବୁ ଖୋଜି କିଛି ପାଇଲେ ନାହିଁ ।

ତା'ପରେ ସିପାହି ଦୁହେଁ ରାଗି ଯାଇ ତା' ବେକକୁ ଧରି ପଚାରିଲେ, "କହ, ତୋ ସାଙ୍ଗ ଚୋର କୁଆଡ଼େ ଗଲା, ନହେଲେ ତତେ ମାରି ମାରି ମାରିଦେବୁ ।"

ବିଚରା କୃଷ୍ଣ କାନ୍ଦି କାନ୍ଦି ତା' ବିଷୟରେ ଓ ତା' ଭାଇ ବିଷୟରେ ସବୁ କହିଲା । ତା'ପରେ ସେ କହିଲା, "ଆମେ ତୁଳସୀ ମାଉସୀକୁ ମଜାରେ କହୁ କହୁ ସେ ଦୁଇପଟ ଚୁଡ଼ି ଦେଇଥିଲା । ମୁଁ ଚୁଡ଼ିର ମୂଲ୍ୟ ଜାଣିବାକୁ ଆସିଥିଲି । ସେତିକିବେଳେ ସେ ଚୋର ଏଠାକୁ ପଶି ଆସିଲା । ମୋର କ'ଣ ଦୋଷ ? ମୋତେ ଛାଡ଼ିଦିଅ ।"

ଏଣେ ରାମଚନ୍ଦ୍ର କ'ଣ କରିଛି, ଦୋକାନରେ ଗୁଡ଼ାଏ ଚିତ୍କାର ଶୁଣି ଆଉ ଦୁଇଜଣ ସିପାହୀଙ୍କୁ ଦୋକାନ ଭିତରକୁ ଯିବାର ଦେଖି ସେଠୁ ପଳାଇଲା । କୃଷ୍ଣ ସିପାହୀମାନଙ୍କ ସହିତ ବାହାରକୁ ଆସି ଦେଖେ ଭାଇ ନାହିଁ ।



“ବାଃ ବେଶ୍ ଠକିପାରୁଛୁ ତ ? ଘଇ-ଫାଇର ଦେଖା ନାହିଁ, ମିଛ କହି ଏଠାକୁ ଆଣିଲ ! ଚାଲ ସିଧା କଇଦୀଖାନାକୁ ।” ସିପାହୀମାନେ ଧମକ ଦେଇ ତାକୁ ଟାଣି ଟାଣି ନେଇଗଲେ ।

ଏଣେ ରାମଚନ୍ଦ୍ର କ’ଣ କରିଛି, ଚଢ଼େଇ ଦୁଇଟି ଧରି ଗୋଟିଏ ଗଳି ଭିତରେ ଦୌଡ଼ି ଦୌଡ଼ି ପ୍ରଧାନ ରାସ୍ତାରେ ପହଞ୍ଚିଲା । ଦେଖିଲା ଗୋଟିଏ ଭଡ଼ାଗାଡ଼ି ଯାଉଛି । ତାକୁ ଅଟକାଇ ବସିଲା । ଆଗରୁ ସେଥିରେ ଜଣେ ମାନ୍ୟ ବ୍ୟକ୍ତି ବସିଥା’ନ୍ତି ।

ଭଦ୍ରଲୋକ ଜଣକ ରାମକୁ ପଚାରିଲେ, “ଆରେ ଭାଇ, ତମେ କୁଆଡ଼େ ଯିବ ଗାଡ଼ି-ବାଲାକୁ ନ କହି ବସିପଡ଼ିଲ ଯେ !”

ରାମଚନ୍ଦ୍ର କ’ଣ କହିବ ଚିନ୍ତା କରି ନପାରି ହଠାତ୍ ମିଛରେ କହିଲା, “ମୋ ପିଉସୀର ଦେହ ଖରାପ । ମୁଁ ଦେଖିବାକୁ ଯାଉଛି । ପିଉସୀର ଚିକିତ୍ସା ପାଇଁ ମୁଁ ଦୁଇଟି ଚଢ଼େଇ ଧରିଛି । ସହରରେ ବିକି ପଇସା କିଛି ପାଇବା ମୋର ଇଚ୍ଛା ।”

ଭଦ୍ରବ୍ୟକ୍ତିଟି ଚଢ଼େଇ ଦୁଇଟି ରାମଠାରୁ ନେଇ ଏପଟ ସେପଟ ପରୀକ୍ଷା କରି କହିଲା, “ତୁମେ କ’ଣ ବୋଲି ମୋତେ ପାଇଲ କି ? ମୋତେ ଠକୁଛ ? ମୁଁ ଆଖି ବୁଜି କହିଦେବି ଯେ ଏହା ନକଲି ।” ଏତିକି କହି ସେ ଚଢ଼େଇ ଦୁ’ଟିକୁ ପାଖରେ ଥିବା ନର୍ଦ୍ଦମା ଭିତରକୁ ଫିଙ୍ଗି ଦେଲା ।

ସେ ଯେଉଁ ସ୍ଥାନକୁ ଚଢ଼େଇ ହଳକ ଫିଙ୍ଗିଲା, ସେଠାରେ ଗୋଟାଏ ବୁଢ଼ା ଥିଲା । ହୁଏତ ସେ ପରେ ଆସି ଚଢ଼େଇ ହଳକ ଉଦ୍ଧାର କରିଥାନ୍ତା ଓ ଯଦି ତାହା ସୁନାର ହୋଇଥିବ, ତେବେ ଆତ୍ମସାତ୍ କରିଥାନ୍ତା ।

ରାମ ଆଶ୍ଚର୍ଯ୍ୟ ହୋଇ ଟିକେ ଚୁପ୍ ରହିଗଲା । ତା’ପରେ ରାଗିଯାଇ କହିଲା, “ମୋ ଚଢ଼େଇକୁ ଫିଙ୍ଗିବାକୁ ତମେ କିଏ ?” ଏତିକି କହି ସେ ଦେଲା ଏକ ଚାପୁଡ଼ା । ସିଏ ମଧ୍ୟ ରାମକୁ ଚାପୁଡ଼ାଏ କଷିଲା । ତା’ପରେ ତ ଗାଡ଼ି ଭିତରେ ଧସ୍ତାଧସ୍ତି ହେଲେ । ଗାଡ଼ିବାଲା ଗାଡ଼ିରୁ ଖସିପଡ଼ିଲା ଓ ଗାଡ଼ି ଓଲଟି ପଡ଼ିଲା । ଠିକ୍ ସେହି ସମୟରେ ସେହି ରାସ୍ତା ଦେଇ

ଯାଉଥା'ନ୍ତି କୃଷ୍ଣଙ୍କୁ ଧରିଥିବା ସିପାହୀମାନେ । କୃଷ୍ଣ ତତ୍‌କ୍ଷଣାତ୍ ସିପାହୀମାନଙ୍କୁ କହିଲା, "ହେଇ ଦେଖ ସେ ଯେଉଁ ଦୁଇଜଣ ଲୋକ ମରାମରି ହେଉଛନ୍ତି, ତହିଁରୁ ଜଣେ ମୋ ଭାଇ ଓ ଅନ୍ୟ ଜଣକ ଦୋକାନରୁ ହାର ଚୋରି କରିଥିବା ବ୍ୟକ୍ତି ।"

"ଓ, ତାହାହେଲେ ତିନିଜଣ ଏ ଘଟଣାରେ ସଂପୃକ୍ତ । ତା' ମାନେ ହେଉଛି ଏବେ ଚୋରିମାଲ ବାଣ୍ଟିବାରେ ଗୋଳମାଳ ହୋଇ କଳିଗୋଳ ଓ ମାଡ଼ପିଟ ହେଉଛନ୍ତି ।" ଏକଥା କହି ସିପାହୀମାନେ ରାମଙ୍କୁ ଓ ଅନ୍ୟ ବ୍ୟକ୍ତିଙ୍କୁ ମଧ୍ୟ ଧରି ନେଲେ । ତିନିଜଣଙ୍କୁ ଗିରଫ କରିନେଲେ ।

ବିଚାର ହେବାବେଳେ ରାମ ଓ କୃଷ୍ଣ ଆମୂଳଚୂଳ ସବୁ କଥା କହିଲେ । ସେମାନଙ୍କ କଥା କେତେଦୂର ସତ୍ୟ ଜାଣିବା ପାଇଁ ସିପାହୀ ଗ୍ରାମକୁ ଯାଇ ତାଙ୍କର ବାପା, ମା' ଓ ତୁଳସୀଙ୍କୁ ନେଇ ଆସିଲେ । ସତ୍ୟ ପ୍ରମାଣିତ ହେଲା । ଚୋରର ଦଣ୍ଡ ପାଇଲା । ଏମାନେ ସମସ୍ତେ ଛାଡ଼ ପାଇଲେ । ଫେରିବା ବାଟରେ ରାମ ଓ କୃଷ୍ଣଙ୍କୁ ତୁଳସୀ କହିଲେ, "ଆରେ, ତୁମେ ଦୁଇଜଣ ଏତେ ମୂର୍ଖ ? ତମେ ଯେମିତି ମଢର୍ କରିବ ବୋଲି ଥଟ୍ଟାରେ କହିଲି ମୁଁ ମଧ୍ୟ ମଜାରେ ନକଲି ଚୁଡ଼ି ଦି'ପଟ ଗୁନ୍ଧା ଦେଇ ଦେଲି । ସେଥିରୁ ଏତେ କଥା ? ଆରେ ଆମ ଗ୍ରାମରେ ତ ମଢରଟିଏ ଅଛି । ସ୍କୁଲଟିଏ ଅଛି ଯେ ଅତ୍ୟନ୍ତ ଛୋଟ । ବରଂ ସ୍କୁଲଟିଏ ଗୃଲ୍ଲ କରିବା । ତମେ ଦୁଇଜଣ ସେଇଠି ରହି ପିଲଙ୍କୁ ପାଠ ପଢ଼ାଇ ପେଟ ପୋଷିବ । ତାହେଲେ ଆମ ଗ୍ରାମର ମଙ୍ଗଳ ହେବ ।"

ଏହି ଘଟଣାରୁ ରାମ ଓ କୃଷ୍ଣ ବୁଝିଲେ ଯେ ପାଠଶାଠ ପଢ଼ି ଅଳସୁଆ ହୋଇ ବୁଲିବା ଖାଲି ଲଜ୍ଜାର କଥା ନୁହେଁ ବିପଜ୍ଜନକ ମଧ୍ୟ । ତା'ପରେ ସେମାନେ ଗ୍ରାମକୁ ଫେରି ସ୍କୁଲଟିଏ ଖୋଲି ସେଥିରେ ପିଲଙ୍କୁ ଶିକ୍ଷାଦାନ କରି ସୁଖ ଶାନ୍ତିରେ ରହିଲେ ।





# ଜାମାତା ନିର୍ବାଚନ

ବିଶାଳ ଦେଶର ରାଜା ଥିଲେ କୀର୍ତ୍ତିସେନ୍ । ତାଙ୍କର ଏକମାତ୍ର କନ୍ୟା ହେଉଛନ୍ତି ପ୍ରିୟମ୍ବଦା । ପ୍ରିୟମ୍ବଦା ଥିଲେ ରୂପରେ ଓ ଗୁଣରେ ଅସାମାନ୍ୟା । କିନ୍ତୁ ତାଙ୍କ ଜାତକରେ ଟିକିଏ ଦୋଷ ଥିଲା । ଗଣକମାନେ କହୁଥିଲେ ତାଙ୍କ ଜୀବନରେ ସର୍ପ ଭୟର ସମ୍ଭାବନା ଅଛି ଓ ସେ ବିବାହ କରିବେ ଜଣେ ସାଧାରଣ ବ୍ୟକ୍ତିକୁ ।

ରାଜା କୀର୍ତ୍ତିସେନ୍ ଓ ରାଣୀ ଶୁଭଲକ୍ଷ୍ମୀଙ୍କର ଗଣକ ବା ଜ୍ୟୋତିଷମାନଙ୍କ ବିଦ୍ୟାରେ ଗଭୀର ବିଶ୍ୱାସ ଥିଲା । ତଥାପି ନିଜ ଝିଅକୁ ସେହି ସବୁ ବିପଦରୁ ମୁକ୍ତ ରଖିବା ପାଇଁ ସେମାନେ ଯଥୋପରୋନାସ୍ତି ଚେଷ୍ଟା କରୁଥିଲେ । ସେଥିପାଇଁ ସର୍ବଦା ରାଜକୁମାରୀ ଦାସୀ ସଖୀ ବା ପରିଚାରୀମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ରହୁଥିଲେ ।

କ୍ରମେ ପ୍ରିୟମ୍ବଦା ପରିଣତ ବୟସ ପ୍ରାପ୍ତ ହେଲେ । ରାଜା ଓ ରାଣୀ ତାଙ୍କର ବିବାହ ପାଇଁ ବର ଖୋଜିବାରେ ଲାଗିଲେ । ରାଜା ଚାହୁଁଥିଲେ ତାଙ୍କର ଜାମାତା ହେବ ରୂପ, ଗୁଣ ଓ ବିଦ୍ୟାରେ ଅସାଧାରଣ ।

ପ୍ରିୟମ୍ବଦା ସର୍ବଦା ସଖୀମାନଙ୍କ ଦ୍ୱାରା ପରିବେଷ୍ଟିତା ହୋଇ ରହୁଥିଲେ । ତଥାପି ମଧ୍ୟେ ମଧ୍ୟେ ଏକୁଟିଆ ଉଦ୍ୟାନରେ ବସି ବସି ପ୍ରକୃତିର ସୌନ୍ଦର୍ଯ୍ୟ ନିରୀକ୍ଷଣ କରିବାକୁ ତାଙ୍କୁ ଭଲ ଲାଗେ । ଏହିପରି ଦିନେ ପ୍ରିୟମ୍ବଦା ବଗିଚାରେ ଏକୁଟିଆ ବୁଲୁଥିଲେ । ସେଦିନ କେହି ଦାସୀ ପରିଚାରୀ ସାଙ୍ଗରେ ନଥା'ନ୍ତି । ଗୋଟିଏ କଳନାଗ ଆସି ପ୍ରିୟମ୍ବଦାଙ୍କ ପାଖରେହିଁ ଫଣା ଟେକି ରହିଲା । ସେ କିନ୍ତୁ ସାପକୁ ଦେଖିପାରୁ ନଥିଲେ । ସେ ନାନା ପ୍ରକାର ଫୁଲର ଓ ପ୍ରକୃତିର ସୌନ୍ଦର୍ଯ୍ୟ



ଉପଦେଶ କରିବାରେ ବ୍ୟସ୍ତ । ଅନ୍ୟମନସ୍କ ଭାବରେ ସେ ଫୁଲଟିଏ ତୋଳି ତାକୁ କିଛି ସମୟ ହାତରେ ଧରି ଫିଙ୍ଗି ଦେଲେ । ଫୁଲଟି ଯାଇ ପଡ଼ିଲା ସାପ ମୁଣ୍ଡ ଉପରେ । ସାପ ରାଗରେ ଗର୍ଜ୍ଜନ କଲା । ଶବ୍ଦ ଶୁଣି ପ୍ରିୟମ୍ବଦା ଚାହିଁ ଦେଖିଲେ ଯେ କଳାନାଗଟିଏ ତାଙ୍କୁ ଦଂଶନ କରିବାକୁ ଉଦ୍ୟତ । ସେ ଭୟରେ ଚିତ୍କାର କରି ଉଠିଲେ । ପରକ୍ଷଣରେ ସେ ଦେଖିଲେ ହଠାତ୍ କେଉଁଠୁ ଏକ ଯୁବକ ଆସି କଳାନାଗର ଲାଞ୍ଜ ଧରି ଶୂନ୍ୟରେ ବୁଲାଇ ବୁଲାଇ ମାଟିରେ ପିଟି ମାରିଦେଲା ।

ଭୟଙ୍କର ବିପଦରୁ ରକ୍ଷା ପାଇବା ପରେ ପ୍ରିୟମ୍ବଦା ବୁଝିବାକୁ ଚେଷ୍ଟା କଲେ ସେହି ରୂପବାନ୍ ଓ ସାହସୀ ଯୁବକ କିଏ, ଯିଏ ତାଙ୍କର ପ୍ରାଣ ରକ୍ଷା କଲା । କେଉଁଠାରୁ ବା ସେ ଆସିଲା । ଏଇସବୁ ଭାବୁ ଭାବୁ ସେ କିଛି ସମୟ ପାଇଁ ଚିନ୍ତାମଗ୍ନ ହୋଇଗଲେ; ତା'ପରେ ସଚେତନ ହୋଇ ପଚାରିଲେ, "ତମେ କିଏ ?"

"ରାଜକୁମାରୀ, ମୁଁ ଆପଣଙ୍କର ସେବକ । ଏହି ରାଜ ଉଦ୍ୟାନର ପ୍ରହରୀ ।" ଯୁବକ ଉତ୍ତର ଦେଲା ।

ରାଜକୁମାରୀ ଆଗରୁ ଏହି ପ୍ରହରୀକୁ କେବେ ହେଲେ ଦେଖି ନଥିଲେ; କିନ୍ତୁ ପ୍ରହରୀ ବହୁ ପୂର୍ବରୁ ତାଙ୍କୁ ଦେଖିଥିଲା ।

ପ୍ରିୟମ୍ବଦା ପଚାରିଲେ, "ତୁମ ନାମ ?"

"ବିଜୟ," ପ୍ରହରୀ ଉତ୍ତର ଦେଲା ।

"ଆଚ୍ଛା, ବିଜୟ, ତମେ ଠିକ୍ ସମୟରେ ପହଞ୍ଚି ମୋର ପ୍ରାଣ ରକ୍ଷା କଲ । କୁହ ତୁମକୁ ମୁଁ କି ପୁରସ୍କାର ଦେବି ?" ପ୍ରିୟମ୍ବଦା ପଚାରିଲେ ।

"ଆଜ୍ଞା, ମୁଁ ତ ମୋର କର୍ତ୍ତବ୍ୟ ମାତ୍ର କରିଛି । ସେଥିରେ ପୁରସ୍କାରର ପ୍ରଶ୍ନ କୁଆଡୁ ଆସିବ ? ତା'ଛଡ଼ା ସେପରି କିଛି ଜିନିଷ ପାଇବା ପାଇଁ ମୋର କେବେ କୌଣସି ଅଭିଳାଷ ନଥିଲା, ଏବେ ମଧ୍ୟ ନାହିଁ ।" ବିଜୟ କହିଲା ।

"ଏ ସଂସାରରେ ଋଷିମୁନି ବା ସାଧୁ ଯୋଗୀଙ୍କ ବ୍ୟତୀତ କାମନାରହିତ ବ୍ୟକ୍ତି



ପ୍ରାପ୍ତ କେହି ନାହିଁ । ତୁମେ ସଂକୋଚ ନ କରି କହିଦିଅ, ମୁଁ ତୁମର ଇଚ୍ଛା ନିଶ୍ଚୟ ପୂରଣ କରିବି ଯଦ୍ଦ୍ୱାରା ତମେ ଖୁସି ହେବ, ମୁଁ ମଧ୍ୟ ଖୁସି ହେବ ।" ପ୍ରିୟମ୍ବଦା କହିଲେ ।

"ମଣିଷ ମନରେ ସ୍ୱର୍ଗ ପାଇଁ ଓ ଭଗବାନ୍‌ଙ୍କ ଦର୍ଶନ ପାଇଁ ଇଚ୍ଛା ହୋଇଥାଏ । କ'ଣ, ଆପଣ ସେ ଇଚ୍ଛା ପୂରଣ କରିପାରିବେ ?" ବିଜୟ କହିଲା ।

"ତୁମ ଭିତରେ କ'ଣ ଏପରି କିଛି ଇଚ୍ଛା ନାହିଁ ଯାହା ମୁଁ ପୂରଣ କରିପାରିବି ?" ପ୍ରିୟମ୍ବଦା ପଚାରିଲେ ।

"ହଁ, ଅଛି, ଏବଂ ଆପଣ ଅବଶ୍ୟ ତାହା ପୂରଣ କରି ପାରିବେ । କିନ୍ତୁ କରିବେ ନାହିଁ । ଯଦି ବା କରିବେ ମୁଁ ଆପଣଙ୍କୁ ପୂରଣ କରିବାକୁ ଦେବି ନାହିଁ ।" ବିଜୟ କହିଲା ।

"ଏବେ କୁହ ତ ତୁମର ଇଚ୍ଛା କ'ଣ ?" ଆଶ୍ଚର୍ଯ୍ୟ ହୋଇ ରାଜକୁମାରୀ ପଚାରିଲେ ।

"ରାଜକୁମାରୀ, ମୁଁ ମନେ ମନେ ଆପଣଙ୍କୁ ଶ୍ରଦ୍ଧା କରେ । ତେଣୁ ଆପଣଙ୍କୁ ପାଖରେ ପାଇବା ପାଇଁ ଯଦି ଇଚ୍ଛା ଥାଏ, ତାହା ମଧ୍ୟ କିଛି ଆଶ୍ଚର୍ଯ୍ୟ ନୁହେଁ । ମୁଁ ଆପଣଙ୍କୁ ଦୂରରୁ ସବୁଦିନେ ଦେଖେ ଏଇ ଉଦ୍ୟାନରେ । ଯେତେବେଳେ ମୁଁ ଭାବେ ଯେ ଏହି ରାଜୋଦ୍ୟାନର ମୁଁ ପ୍ରହରୀ । ସେତେବେଳେ ମୁଁ ନିଜକୁ ଭାଗ୍ୟବାନ୍ ମନେ କରୁଛି କାରଣ ଆପଣଙ୍କୁ ସବୁଦିନେ ଥରେ ଦେଖିବାକୁ ପାଏ । ଆଜି ଏତିକି ମୁଁ ଚାହେଁ ଯେ କେହି ଯେପରି ମୋର ଏଇ ସୌଭାଗ୍ୟରୁ ମୋତେ ବଞ୍ଚିତ ନ କରେ ।" ବିଜୟ କହିଲା ।

ଯୁବକ ବିଜୟର କଥା ଶୁଣି ପ୍ରିୟମ୍ବଦା ଅତ୍ୟନ୍ତ ଆଶ୍ଚର୍ଯ୍ୟ ହେଲେ । ସେ ଭାବିଲେ ଯେ ସେ ଇଚ୍ଛା କଲେ ହୁଏତ ତାକୁ ବିବାହ କରି ପାରନ୍ତେ । କିନ୍ତୁ ପିତା ଏକଥା ଶୁଣିଲେ ସଙ୍ଗେ ସଙ୍ଗେ ବିଜୟର ମୁଣ୍ଡ କାଟି ଦେବ । ଏପରି ପରିସ୍ଥିତିରେ କ'ଣ କରାଯିବ ? ଏହି ଯୁବକ ତାଙ୍କର ପ୍ରାଣରକ୍ଷା କଲା । ଆଜି ତା'ର ଇଚ୍ଛା ଯଦି ସେ ପୂର୍ଣ୍ଣ କରି ନ ପାରିଲେ ତେବେ ତାଙ୍କର ରାଜକୁମାରୀ ହେବା ବ୍ୟର୍ଥ । ପ୍ରିୟମ୍ବଦା ଗଭୀର ଭାବରେ ଚିନ୍ତା କରି



ଶେଷକୁ ଦୁଃଖିତ ହୋଇ କହିଲେ, "ବିଜୟ, ଆଜି ପର୍ଯ୍ୟନ୍ତ ମୁଁ ନିଜକୁ ବହୁତ ବଡ଼ ବୋଲି ଭାବିଥିଲି । କିନ୍ତୁ ଏବେ ଭାବୁଛି ମୋର ଜୀବନ ରକ୍ଷାକାରୀ ତୁମର ଉପକାର କରିବାକୁ ମୁଁ ଅସମର୍ଥ ଏକ ଅସହାୟା ନାରୀ ମାତ୍ର । ଆଶା କରୁଛି ତମେ ମୋତେ କ୍ଷମା ଦେବ ।"

"ରାଜକୁମାରୀ, କ୍ଷମା କରିବା ପାଇଁ ମୋର ଅଧିକାର କାହିଁ ? କ'ଣ ବା ଉପକାର ମୁଁ କରିଛି ? ସେମିତି ହେଲେ ତ ମୁଁ କ୍ଷମା କରନ୍ତି ନାହିଁ ! ଆପଣଙ୍କୁ ରକ୍ଷା କରିବା ତ ମୋର କର୍ତ୍ତବ୍ୟ । ଯଦି ଆପଣଙ୍କର ମୋ ପ୍ରତି ଟିକିଏ ବି ଦୟା ଓ ସ୍ନେହ ଥାଏ, ତେବେ ସେଇ ମୋ ଜୀବନ ପାଇଁ ଯଥେଷ୍ଟ ।"

ତା'ପରେ ପ୍ରିୟମ୍ବଦା ଚିନ୍ତାମଗ୍ନ ହୋଇ ଉଦ୍ୟାନରୁ ଘରକୁ ଫେରିଲେ । ଫେରି ଦୂରରୁ ଦେଖିଲେ ରାଜା ଓ ରାଣୀ ତାଙ୍କର ବିଷୟରେହିଁ ଆଲୋଚନା କରୁଛନ୍ତି । ସେ କୌତୁହଳବଶତଃ ଗୋଟିଏ ପର୍ଦ୍ଦା ପଛରେ ଲୁଚି ରହି ସେମାନଙ୍କ କଥା ଶୁଣିଲେ ।

ରାଜା କହିଲେ, "ରାଣୀ, ପ୍ରିୟମ୍ବଦାର ବିବାହ ବିଷୟ ନେଇ ମୁଁ ଖୁବ୍ ଚିନ୍ତିତ ।"

"ସ୍ୱାମୀ, ମୁଁ ମଧ୍ୟ ସେହିକଥା ସବୁବେଳେ ଭାବୁଛି । ଆମେ ଏତେ ଭାବିଲେ କ'ଣ ହେବ, ତା'ର ତ ଜାତକ କହୁଛି ସେ ଜଣେ ସାଧାରଣ ବ୍ୟକ୍ତିକୁ ବାହା ହେବ !" ରାଣୀ କହିଲେ ।

ପିତାମାତାଙ୍କ କଥାବାର୍ତ୍ତା ଶୁଣିବା ପରେ ପ୍ରିୟମ୍ବଦା ଜାଣିନେଲେ ଯେ ଜଣେ ସାଧାରଣ ବ୍ୟକ୍ତିକୁ ବିବାହ କରିବା ତାଙ୍କ ଜାତକରେ ଅଛି । ଆହୁରି ମଧ୍ୟ ସେ ଜାଣନ୍ତି ଯେ ଉଚ୍ଚ ରାଜବଂଶର ପିଲା ନ ହେଲେ ତାଙ୍କ ପିତାମାତା ତାଙ୍କୁ ବିବାହ ଦେବେ ନାହିଁ । ତଥାପି ସେ ଭାବିଲେ ଯେ ଜାତକ ଅନୁସାରେ ସବୁ ଘଟୁଛି ଯେତେବେଳେ, ଏଇଥା ଘଟିବାରେ ଆଶ୍ଚର୍ଯ୍ୟ ବା କ'ଣ ଅଛି ? ସାରାଦିନ ସେ ଭାବିବାକୁ ଲାଗିଲେ ଯେ ଜାତକ ଅନୁସାରେ ଯଦି ଜଣେ ସାଧାରଣ ବ୍ୟକ୍ତି ସହିତ ବିବାହ ହେବ; ତେବେ ତାଙ୍କର ପ୍ରାଣରକ୍ଷାକାରୀ, ସୁନ୍ଦର, ବଳିଷ୍ଠ ଯୁବକ ବିଜୟ ସହିତ ବା କାହିଁକି ନ ହେବ ? ଭାବି ଭାବି ସେ ଠିକ୍

କଲେ ଯେ ତାଙ୍କର ବିବାହ ବିଜୟ ସହିତହିଁ ହେବ । କିନ୍ତୁ ଏକଥା ପିତାମାତାଙ୍କୁ କିପରି କହିବେ ।

ପ୍ରିୟମ୍ବଦା ଏପରି ଭାବୁଥିବା ସମୟରେ ପ୍ରଧାନ ରାଜଜ୍ୟୋତିଷ ରାଜଭବନକୁ ଆସିଲେ । ରାଜା ଓ ରାଣୀ ତାଙ୍କ ସହିତ ବହୁତ ଆଲୋଚନା କଲେ । ପ୍ରିୟମ୍ବଦା ନିଭୃତରେ ଥାଇ ସବୁ ଶୁଣିଲେ । କିନ୍ତୁ ସେମାନେ ଯାହା ଠିକ୍ କଲେ ତାହା ଶୁଣି ସେ ଚମକି ଉଠିଲେ ।

ସେମାନଙ୍କର ଯୋଜନା ଥିଲା ଏହି ପ୍ରକାରର : କେଉଁଠାରୁ ଜଣେ ସାଧାରଣ ଯୁବକକୁ ସେମାନେ ନେଇ ଆସିବେ । ତା' ସହିତ ଗୁପ୍ତଭାବରେ ରାଜକୁମାରୀଙ୍କର ବିବାହ ହେବ । ତା'ପରେ ତାକୁ ବିଷ ଦେଇ ମାରି ଦିଆଯିବ ଓ ପରେ ରାଜକୁମାରୀଙ୍କର ଜଣେ ରାଜକୁମାରଙ୍କ ସହିତ ବିବାହ ହେବ । ତେବେ ଜାତକର ଗଣନା ଅନୁସାରେ ସେଇ ଭାବରେ ଋଷ୍ଟ କଟିଯିବ ।

ପ୍ରିୟମ୍ବଦା ଭାବିଲେ ଏବେ ଯଦି ସେ ବିଜୟର ପ୍ରସ୍ତାବ ଦିଅନ୍ତି ତ ତେବେ ପିତାମାତା ଆନନ୍ଦରେ ରାଜି ହୋଇଯିବେ। ପୁଣି ଏକଥା ବି ସତ୍ୟ ଯେ ବିବାହ ପରେ ତାକୁ ମାରି ଦିଆଯିବ । ଏହାଠାରୁ ବଳି ମହାପାପ ଆଉ କ'ଣ ହୋଇପାରେ ?

ପ୍ରିୟମ୍ବଦା ମନରେ ବହୁତ ଚିନ୍ତା କରିବା ପରେ ଏକେଲା ଉଦ୍ୟାନକୁ ଗଲେ ଓ ସେଠାରେ ସେ ବିଜୟକୁ ଡାକି କହିଲେ, "ବିଜୟ ମୁଁ ଠିକ୍ କରିଛି ତୁମକୁହିଁ ବିବାହ କରିବି ।"

"ରାଜକୁମାରୀ, ମୁଁ ଏପରି ସାହସ କରି ପାରୁନାହିଁ । ମୋର ନିଜର ପ୍ରାଣ ଯିବାର ଭୟ ଅଛି ।" ବିଜୟ କହିଲା ।

"ବିଜୟ, ମୁଁ ତୁମକୁ ଏପରି ଏକ ଉପାୟ କହିବି ଯଦ୍ୱାରା ଆମର କୌଣସି କ୍ଷତି ହେବ ନାହିଁ । ତମେ ନିଶ୍ଚିନ୍ତ ରୁହ ।" ପ୍ରିୟମ୍ବଦା କହିଲେ । (କ୍ରମଶଃ)



# ଜ୍ୟୋତିଷ ନିର୍ବାଚନ

ପୁଷ୍ପପୁର ରାଜ୍ୟରେ ରାଜଜ୍ୟୋତିଷଙ୍କ ସ୍ଥାନ ଖାଲି ପଡ଼ିଥାଏ । ସେହି ପଦ ପାଇଁ ରାଜ୍ୟର ଅନେକ ଜ୍ୟୋତିଷଙ୍କୁ ନିମନ୍ତ୍ରଣ କରାଯାଇ ପରୀକ୍ଷା କରାଗଲା । ସର୍ବଶେଷରେ ସମସ୍ତେ କଟିଯାଇ ପାଞ୍ଚଜଣ ପ୍ରସିଦ୍ଧ ଜ୍ୟୋତିଷ ରହିଲେ । ସେମାନଙ୍କ ମଧ୍ୟରୁ ଜଣକୁ ନିଆହେବା କଥା ।

ରାଜା ପ୍ରତ୍ୟେକଙ୍କୁ ବ୍ୟକ୍ତିଗତ ଭାବରେ ଡାକି ପଚାରିଲେ, "କ'ଣ ଆପଣଙ୍କ ଜାତକ କହୁଛି ଆପଣ ରାଜଜ୍ୟୋତିଷ ହେବେ ?"

"ନିଶ୍ଚୟ, ସେପରି ଯୋଗ ଥିବାରୁ ତ ମୁଁ ଗଣନା କରି ଆସିଛି ।" ପ୍ରତ୍ୟେକ ସେଇ ଏକାକଥା କହିଲେ । ରାଜା ମହା ଅଡୁଆରେ ପଡ଼ିଲେ । ସେ ମନ୍ତ୍ରୀଙ୍କୁ କହିଲେ, "ଏହାର ଅର୍ଥ ମାତ୍ର ଜଣେ ପ୍ରକୃତ ଜ୍ୟୋତିଷ, ଅନ୍ୟମାନେ ଭୁଲ୍ ଗଣନା କରିଛନ୍ତି ।"

"ଆଚ୍ଛା କାଲି ଏକାଠି ସମସ୍ତିଙ୍କୁ ଡକାଯାଉ"—ମନ୍ତ୍ରୀ କହିଲେ । ସମୟ ଦିଆଗଲା । ପରଦିନ ସମସ୍ତେ ଠିକ୍ ସମୟକୁ ଆସିଲେ; ଜଣେ କିନ୍ତୁ ଟିକିଏ ଡେରି କରି ଆସିଲେ । ତାଙ୍କୁ କାରଣ ପଚାରନ୍ତେ ସେ କହିଲେ, "ମହାରାଜ, ବାଟରେ ଜଣେ ଲୋକ ବିପଦରେ ପଡ଼ିବାକୁ ଯାଉଥିଲା ମୁଁ ତାକୁ ସାବଧାନ କରାଇ ଦେଉ ଦେଉ ଟିକିଏ ଡେରି ହେଲା । କିନ୍ତୁ ଡେରି ହେଉ ନା ଶିଘ୍ର ହେଉ ମୁହିଁ ରାଜଜ୍ୟୋତିଷ ପଦ ନିଶ୍ଚୟ ପାଇବି । ଏଠାରେ ନ ପାଇଲେ ଆଉ କେଉଁ ରାଜ୍ୟରେ ପାଇବି ।" ଜ୍ୟୋତିଷ କହିଲେ ।

"ତମେ କ'ଣ ଏ ବିଷୟରେ ସମ୍ପୂର୍ଣ୍ଣ ନିଶ୍ଚିତ ?" ମନ୍ତ୍ରୀ ପଚାରିଲେ ।

"ମୋ ଜାତକ ତ ସେଇଆ କହୁଛି ।" ଜ୍ୟୋତିଷ କହିଲେ ।

ମନ୍ତ୍ରୀ ରାଜାଙ୍କୁ କହିଲେ, "ଆଜ୍ଞା ଏହି ବ୍ୟକ୍ତିଙ୍କର ଭାଗ୍ୟରେହିଁ ପଦଟି ଅଛି । ଆମେ ୟାଙ୍କୁ ନ ଦେଲେ ସେ ତ ଅନ୍ୟ ରାଜାଙ୍କ ପାଖରେ ପାଇବେ । ଆମେ କେବଳ ତାଙ୍କୁ ହରାଇବା ।"

ଶେଷକୁ ତାଙ୍କୁହିଁ ରାଜଜ୍ୟୋତିଷ ପଦ ପାଇଁ ନିର୍ବାଚିତ କରାଗଲା ।





## ଦେହ ଓଜନର ତିନିଗୁଣ ଆହାର

ଜନ୍ମ ହେବାର ମାସେ ପରେ କିବି ପକ୍ଷୀର ଶିଶୁମାନେ ପ୍ରାୟ ୨୪୦ ଗ୍ରାମ ଓଜନ ହୋଇଥା'ନ୍ତି । ସେମାନେ ୧୪ ଘଣ୍ଟା ମଧ୍ୟରେ ପ୍ରାୟ ୬୦୦ ଗ୍ରାମ୍ ଓଜନର କୀଟ ପତଙ୍ଗ ଧରି ଖାଇଯା'ନ୍ତି । ଏହାର ଅର୍ଥ ସେମାନଙ୍କର ଦିନକର ଆହାର ସେମାନଙ୍କ ଦେହର ତିନିଗୁଣ ।

## ଗଭୀର ନଦୀ

ଚୀନ୍‌ର ୟାଙ୍ଗସେ ନଦୀ ହେଉଛି ସାରା ପୃଥିବୀର ଗଭୀରତମ ନଦୀ । ସଙ୍କୀର୍ଣ୍ଣ ପାହାଡ଼ ମାର୍ଗ ମଧ୍ୟରେ ବହୁଥିବା ଏହି ନଦୀର ଗଭୀରତା ପ୍ରାୟ ୬୦୦ ଫୁଟ ।



## ରାକ୍ଷସ କଙ୍କି



୨୨ ଇଞ୍ଚ ଲମ୍ବା ପକ୍ଷ ଥିବା ଏହି କଙ୍କି ତିନିହଜାର ଲକ୍ଷ ବର୍ଷ ପୂର୍ବେ ପୃଥିବୀରେ ରହୁଥିଲେ । ବୈଜ୍ଞାନିକମାନେ କହନ୍ତି ପକ୍ଷୀମାନେ ଜନ୍ମନେବା ଆଗରୁ ସେମାନେ ପୃଥିବୀରେ ରହୁଥିଲେ ।





FOAMING
Forhan's
FLUORIDE
The toothpaste that tightens gums, fights cavities
REPLACE CAP






# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ. ୫୦

ପୁରସ୍କୃତ ପରିଚୟୋକ୍ତି ମେ ୧୯୮୭ ସଂଖ୍ୟାରେ ପ୍ରକାଶ ପାଇବ



M. Natarajan



S. B. Prasad

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ମାର୍ଚ୍ଚ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର । ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ । ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

ଜାନୁଆରି '୮୭ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ମା' କୋଳେ ଛୁଆ ଦିଅଇ ହସି !

ଦ୍ୱିତୀୟ ଚିତ୍ର : ଛୁଛୁଡ଼ା ମିତଣୀ ପୁଷି ମାଉସୀ !!

ପୁରସ୍କାର ବିଜୟୀ : ସୁଦର୍ଶନ ଦାଶ, ଜଗତସିଂହପୁର ।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।


## ଜହ୍ନମାମୁଁ

ବାର୍ଷିକ ଦେୟ : ଟ. ୩୦-୦୦

ମନିଅର୍ଡର ପଠାଇବା ଠିକଣା :

ଡଲ୍ଟନ୍ ଏଜେନ୍ସିଜ୍, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

ବିଦେଶ ସଡାକେ ଦେୟ ବିବରଣୀ ପାଇଁ ନିମ୍ନ ଠିକଣାକୁ ଲେଖନ୍ତୁ :

ଚନ୍ଦାମାମା ପବ୍ଲିକେଶନ୍ସ, ଚନ୍ଦାମାମା ବିଲ୍ଡିଂସ୍, ବଡ଼ପଲନୀ, ମାଡ୍ରାସ-୬୦୦୦୨୬

Printed by B. V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.

## Statement about ownership of JAHNAMAMU (Oriya)
## Rule 8 (Form VI), Newspapers (Central) Rules, 1956

| | |
|---|---|
| *1. Place of Publication* | 'CHANDAMAMA BUILDINGS'<br>188 N.S.K.<br>Vadapalani, Madras-600 026 |
| *2. Periodicity of Publication* | MONTHLY<br>1st of each calendar month |
| *3. Printer's Name* | B.V. REDDI |
| *Nationality* | INDIAN |
| *Address* | Prasad Process Private Limited<br>188 N.S.K. Salai<br>Vadapalani, Madras-600 026 |
| *4. Publisher's Name* | B. VISWANATHA REDDI |
| *Nationality* | INDIAN |
| *Address* | Chandamama Publications<br>188 N.S.K. Salai<br>Vadapalani, Madras-600 026 |
| *5. Editor's Name* | B. NAGI REDDI |
| *Nationality* | INDIAN |
| *Address* | 'Chandamama Buildings'<br>188 N.S.K. Salai<br>Vadapalani, Madras-600 026 |
| *6. Name and Address of individuals who own the paper* | CHANDAMAMA PUBLICATIONS<br>PARTNERS:<br>1. B.VENKATRAMA REDDY<br>2. B.V.SANJAY REDDY<br>3. B.V.NARESH REDDY<br>4. B.PADMAVATHI<br>5. B.VASUNDHARA<br>6. B.V.SHARATH REDDY<br>7. B.N.RAJESH (Minor)<br>8. B.L.ARCHANA (Minor)<br>9. B.L.ARADHANA (Minor)<br>(All Three Minors admitted to the benefits of Partnership) |

I, B. Viswanatha Reddi, hereby declare that the particulars given above are true to the best of my knowledge and belief.

**B. VISWANATHA REDDI**
*Signature of the Publisher*

*1st March 1987*

A Super treat in every sweet!

SUPER SIZE!
SUPER TASTE!

nutrine
SuperStar
Premium toffees









TWIN TREAT
DELITE
TOP CREAM

Heavenly delights

CLARION




ଭାରତର ସବୁଠାରୁ ବେଶୀ ବିକ୍ରୀ ହେଉଥିବା ଟଫେଇ

JAHNAMAMU (Oriya) MARCH 1987 Regd. No. M. 9098

# ରାମ ଓ ଶ୍ୟାମ



## ଚମତ୍କାର ଉପସ୍ଥିତ ବୁଦ୍ଧି

ରାମ ଓ ଶ୍ୟାମ ପାଖ ବ୍ୟାଙ୍କକୁ ଗଲେ, ଜମା ଦେବା ପାଇଁ ସପ୍ତାହର ସଂଚିତ ଧନ, ବାଟ ସାରା ସୁସ୍ୱାଦୁ ପପିନ୍ସ ଖାଇଖାଇ ଚାଲିଲେ ।

ଉମ୍‌ମ୍... ପପିନ୍ସ !

ହଠାତ୍ ରାମ, ଶ୍ୟାମ ଦେଖିଲେ... ତୀରବେଗରେ ବ୍ୟାଙ୍କ ପାଖରେ ଆସି ଅଟକିଗଲା ଏକ ସ୍କୁଟର, ଦୁଇଟି ଲୋକ ବ୍ୟାଙ୍କ ଭିତରକୁ ପଶିଯାଇ ଚଳାଇଲେ ଲୁଟ କାରବାର ।

ହୁ ଦେଖ !

BANK

ଆମର ବ୍ୟାଙ୍କ ବନ୍ଧୁମାନଙ୍କର ବିପଦ ଉପୁଜିଛି, ତୁରନ୍ତ କିଛି କରିବା ଦରକାର ।

ସେମାନେ ପଛପଟ ଦରଜାବାଟେ ବ୍ୟାଙ୍କ ଭିତରକୁ ପଶିଗଲେ ।

ଏ କାଣ୍ଡ ଦେଖୁଛନ୍ତି !

ହ୍ୟାଣ୍ଡସ ଅପ୍ !

ଟଙ୍କା ସବୁ ଆମକୁ ଦେଇଦିଅ !

ଆରେ ଶ୍ୟାମ ତୁରନ୍ତ କାମ ର ସମୟ ଆସିଛି ।

ରାମ ଓ ଶ୍ୟାମ ପାଦ ଟିପିଟିପି ପହଞ୍ଚିଗଲେ ଡକାଇତଙ୍କ ପଛରେ, ପପିନ୍ସ ପ୍ୟାକ୍‌କୁ ବନ୍ଧୁକ ନଳି ଭଳି ଚାପିଲେ ତାଙ୍କ ପିଠିରେ ।

ହ୍ୟାଣ୍ଡସ ଅପ୍ !

ହଠାତ୍ ଅତର୍କିତ ଆକ୍ରମଣରେ ଡକାୟତ ଜଡ଼ସଡ଼ ହୋଇଗଲେ ଭୟରେ, ରାମ ଓ ଶ୍ୟାମ ଚଟପଟ ତାଙ୍କୁ ବାନ୍ଧିଦେଲେ ଦଉଡ଼ିରେ ।





ରାମ ଓ ଶ୍ୟାମ, ତୁମେ ଦୁହେଁ ଖୁବ ଏକ ବଡ଼ କାମ କରିଛ ।

କିପରି କଲ ?

କି ଉପସ୍ଥିତ ବୁଦ୍ଧି ସତରେ !

ଆମର ପପିନ୍ସ ପ୍ୟାକ୍ କରିଛି ଏ ବିପଦରୁ ଉଦ୍ଧାର ।

